ରେଢ଼ାଖୋଲ ଇତିହାସ
ଲେଖକ
ଶ୍ରୀ ନିରାକାର ମହାଲିକ
ପ୍ରକାଶକ :
ମହିମା ପ୍ରକାଶନ
ଏନ୍-୧/୧୨୧, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଓଡ଼ିଶା (ଭାରତ) ଫୋନ୍ - ୫୫୧ ୦୯୪
ପ୍ରଥମ ପ୍ରକାଶ :
୨୦୦୦
ମୁଦ୍ରଣ :
ସାହିତ୍ୟସିନ୍ଧୁ, ଭୁବନେଶ୍ୱର-୩
ମୂଲ୍ୟ :
ଟ ୧୦୦/- ( ଏକଶହ ଟଙ୍କା)

**REDHAKHOL ITIHAS**
by Sri Nirakara Mahalik
**Publisher :**
Mahima Prakashana
N-1/121,I.R.C. Village, Nayapalli
Bhubaneswar - 15, Orissa ( India)
Ph. : 551 094
**1st Edition :**
2000
**Price :**
Rs. 100/- (Rupees One Hundred Only)

# 'ରେଢାଖୋଲ ଇତିହାସ' ସଂପର୍କରେ

ଇଂଜିନିୟର ଶ୍ରୀ ନିରାକାର ମହାଲିକଙ୍କ ''ରେଢାଖୋଲ ଇତିହାସ''ସଂପର୍କରେ କିଛି ଲେଖିବା ପୂର୍ବରୁ ଲେଖକ ଶ୍ରୀ ନିରାକାର ମହାଲିକଙ୍କ ସମ୍ବନ୍ଧରେ କିଛି ଲେଖିବା ଉଚିତ ମନେ କରୁଛି । ସେ ଓଡ଼ିଶା ସରକାରଙ୍କ ଅଧୀନରେ ଇଂଜିନିୟର ଭାବରେ ଅଠାବନ ବର୍ଷ ବୟସ ପର୍ଯ୍ୟନ୍ତ ଚାକିରି କରି ବିତେଇ ଦେଇଥିଲେହେଁ ନିଜ ଜୀବନକୁ ପଠନ ଓ ଲିଖନ କ୍ଷେତ୍ରରେ ବାନ୍ଧି ପକାଇଥିଲେ । ଜୀବନକୁ ଜୀବିକା ସଙ୍ଗରେ ବିକି ନଦେଇ ତାକୁ ଏକାନ୍ତ ନିଜର କରି ରଖିଥିଲେ । ଫଳରେ କାର୍ଯ୍ୟୋପଲକ୍ଷରେ ସେ ଯେଉଁଯେଉଁ ସ୍ଥାନରେ ରହି ଜୀବିକା ନିର୍ବାହ କଲେ ସେହି ସେହି ସ୍ଥାନର ମହିମା ଗାନ କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଅଛନ୍ତି । ତାଙ୍କରି କଲମରୁ ଆମ୍ଭ ପ୍ରକାଶ କରିଛି ପଶ୍ଚିମ ଓଡ଼ିଶାର ଅଗ୍ରଗଣ୍ୟ ପୁଣ୍ୟ କ୍ଷେତ୍ର ଓ କ୍ଷେତ୍ରାଧିପତି ବିଷୟକ ଆଲୋଚନା ଗ୍ରନ୍ଥ ଶ୍ରୀ ନୃସିଂହନାଥ, ଶ୍ରୀ ହରିଶଙ୍କର, 'ବେଦବ୍ୟା' ସେ ରେଢାଖୋଲ ରେ ଅବସ୍ଥାନ କାଳରେ ଲେଖିଛନ୍ତି ''କନ୍ଧ କବି ଭୀମ ଭୋଇ'' ଓ ''ରେଢାଖୋଲ ଇତିହାସ'' ।

ଇତିହାସ ସର୍ବଦା ସତ୍ୟ ଓ ତଥ୍ୟାଶ୍ରୟୀ । ଏହାର ପ୍ରତ୍ୟେକ ପଙ୍କ୍ତି ଓ ପୃଷ୍ଠା ଅନୁସନ୍ଧାନ ପର୍ଯ୍ୟାଲୋଚନା ଓ ଗବେଷଣା ଉପରେ ପ୍ରତିଷ୍ଠିତ । ତେଣୁ ଇତିହାସ ଲେଖକ ପଦେ ପଦେ ସତର୍କତା ଅବଲମ୍ବନ କରିବାକୁ ବାଧ୍ୟ । ଶ୍ରୀ ମହାଲିକ ତାଙ୍କର ରେଢାଖୋଲ ରହଣି କାଳ ମଧ୍ୟରେ ପୂର୍ବତନ ଗଡଜାତ ରାଜ୍ୟର ନଥିପତ୍ର ଦେଖିଛନ୍ତି , ବିଭିନ୍ନ ସ୍ଥାନକୁ ଯାଇ ବିଭିନ୍ନ ଅଭିଜ୍ଞ ଲୋକଙ୍କ ମୁହଁରୁ ସ୍ଥାନୀୟ ତଥ୍ୟ ସଂଗ୍ରହ କରିଛନ୍ତି , ବିଭିନ୍ନ ପ୍ରକାଶିତ/ଅପ୍ରକାଶିତ ପୁସ୍ତକ ଓ ପାଣ୍ଡୁଲିପିରୁ ଆବଶ୍ୟକୀୟ ତଥ୍ୟ ସଂଗ୍ରହ କରି ତାଙ୍କର 'ରେଢାଖୋଲ ଇତିହାସ'ର କଳେବର ମଣ୍ଡନ କରିଛନ୍ତି । ତାଙ୍କର ଏପ୍ରକାର ସାଧୁ ଉଦ୍ୟମ ସର୍ବଦା ପ୍ରଶଂସନୀୟ । ଏଯାବତ୍ ଓଡ଼ିଶାର ଅବହେଳିତ ପୂର୍ବତନ ଗଡଜାତ ରାଜ୍ୟ ରେଢାଖୋଲ ଇତିହାସ ଲେଖା ହୋଇ ନାହିଁ । ସେହି ଦୃଷ୍ଟିରୁ ଲେଖକ ମହାଲିକଙ୍କର ଏ ଉଦ୍ୟମକୁ ପ୍ରଶଂସା କରୁଛି । ମୌଳିକ ଉପାଦାନକୁ ଭିତ୍ତି କରି ତଥ୍ୟମୂଳକ ଇତିହାସ ଏପର୍ଯ୍ୟନ୍ତ ଲେଖା ହୋଇପାରି ନାହିଁ ।

ଯଦିଓ 'ରେଢାଖୋଲ ଇତିହାସ' ନାମ ବହନ କରିଛି ଏହାକୁ ରେଢାଖୋଲ ରାଜ୍ୟର ସାଂସ୍କୃତିକ ଓ ସାମାଜିକ ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । କ୍ଷେତ୍ର ପରିଦର୍ଶନ ଓ ଅନୁଶୀଳନ କରି, ସେ ଯେଉଁ ତଥ୍ୟ ପରିବେଷଣ କଲେ ଏହାକୁ ଆଧାର କରି ଭବିଷ୍ୟତରେ ଇତିହାସ ଲେଖକ ଓ ଗବେଷକମାନେ ବହୁ ଭାବରେ ଯେ ଉପକୃତ ହେବେ ଏଥିରେ ସନ୍ଦେହ ନାହିଁ ।

'ରେଢାଖୋଲ ଇତିହାସ'ରେ  କେବଳ ରେଢାଖୋଲର ଇତିହାସ ନାହିଁ ଏଥିରେ ରେଢାଖୋଲ ଜନଜୀବନର ସାଂସ୍କୃତିକ ଦିଗ ଉନ୍ମୋଚିତ ହୋଇଛି । ଏହି ରାଜ୍ୟର ଭୌଗୋଳିକ ବିବରଣୀ, ପୌରାଣିକ ତଥ୍ୟ, ପୂଜାପାର୍ବଣ, ନୃତ୍ୟ ଗୀତ ଓ ଜୀବନ ଯାପନର ଜୀବନ୍ତ ଚିତ୍ର ପ୍ରକଟିତ ହୋଇଛି । ପୁଣି ରେଢାଖୋଲ ରାଜ୍ୟ ସହିତ ସଂପୃକ୍ତ ଓଡ଼ିଆ ସାହିତ୍ୟର ସୁପ୍ରସିଦ୍ଧ କବି ଭୀମା ଧୀବର  ଓ ଭୀମ ଭୋଇଙ୍କ ଉପରେ  ସେ କେତେକ ନୂତନ ତଥ୍ୟ ପରିବେଷଣ କରିଛନ୍ତି ।

'ରେଢାଖୋଲ ଇତିହାସ' ଗ୍ରନ୍ଥର  ଉପସ୍ଥାପନା ଶୈଳୀ, ଭାଷା ଓ ଅନୁଶୀଳନ ପଦ୍ଧତି ସମ୍ପର୍କରେ  ମୋର କିଛି କହିବାର ନାହିଁ । ସାମୂହିକ ଭାବରେ କହିବାକୁ ଗଲେ ଏହା ପାଠକ, ଲେଖକ ଓ ଗବେଷକମାନଙ୍କ ପାଇଁ ସହାୟକ ହେବ ।

ଭୁବନେଶ୍ୱର
୩ । ୬ । ୨୦୦୦

ମହେଶ ପ୍ରସାଦ ଦାସ
ଅବସରପ୍ରାପ୍ତ ଯୁଗ୍ମ ନିର୍ଦ୍ଦେଶକ, ସଂସ୍କୃତି ବିଭାଗ
ଓଡ଼ିଶା ସରକାର, ଭୁବନେଶ୍ୱର

# ମୁଖବନ୍ଧ

ମାନବ ସମାଜର କ୍ରମବିକାଶରେ ମନୁଷ୍ୟ ଯେତିକି ଆଗକୁ ଆସିଛି ତାର ସମାଜ ସେତିକି ପ୍ରତିଷ୍ଠିତ ହୋଇଛି । ସେହି ସମାଜ ବ୍ୟକ୍ତିର ସ୍ୱକୀୟ ବ୍ୟକ୍ତିତ୍ୱର ବିକାଶ କରିବା ପାଇଁ ଯଥାସମ୍ଭବ ଅନୁକୂଳ ପରିବେଶ ଓ ପ୍ରେରଣା ଯୋଗାଇ ଦେଇଛି । ଆଦିମ ଯୁଗରେ ଯେଉଁ ସମାଜ ଥିଲା ତାହା ଏବେ ମଧ୍ୟ ଅଛି । ନିଜର ଗୋଷ୍ଠୀ ଭିତରେ ଏକାଭଳି ପର୍ବପାଳିବା, ଏକାଭଳି ଆଚରଣ ଦେଖାଇବା ଏକ ପ୍ରକାର ଢ଼ଙ୍ଗରେ ବଞ୍ଚିରହିବା - ଏହି ସାମୂହିକତା ହିଁ ଗୋଷ୍ଠୀ ଧର୍ମ । ପର୍ବତର ପରିସୀମା ଓ ନଦୀ ଅବବାହିକାରେ ବହୁ ସମାଜ ଓ ସଭ୍ୟତା ବିକଶିତ ହୋଇଛି । ତଦାନୀନ୍ତନ ଗଡ଼ଜାତ ରାଜ୍ୟ ରେଢ଼ାଖୋଲରେ ଏହିପରି ଏକ ସମାଜ ଓ ସଭ୍ୟତାର ସମୃଦ୍ଧି ଘଟିଥିଲା ।

ଏହି ସଭ୍ୟତାର କ୍ରମବିକାଶର ଇତିହାସ ଜାଣିବା ପାଇଁ ଜିଜ୍ଞାସା ସୃଷ୍ଟିହେବା ସ୍ୱାଭାବିକ । ସାମାଜିକ ଜୀବନର ଅଭିବ୍ୟକ୍ତି ହିଁ ସଂସ୍କୃତି । ରେଢ଼ାଖୋଲର ଭୌଗୋଳିକ ପରିସୀମା ମଧ୍ୟରେ ଯେଉଁ ସଂସ୍କୃତି ଓ ସମାଜ ଗଢ଼ିଉଠିଥିଲା ଏ ପୁସ୍ତକରେ ତାର ସମ୍ୟକ ଆଲୋଚନା କରାଯାଇଛି ।

ଏହି ପୁସ୍ତକଟି ଲେଖିବାକୁ ରେଢ଼ାଖୋଲର ଶ୍ରୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ ସଂସଦର ସମ୍ପାଦକ ତଥା ଆଡଭୋକେଟ୍ ଶ୍ରୀଯୁକ୍ତ ଶିବ ପ୍ରସାଦ ପ୍ରଧାନ ବାରମ୍ବାର ଉତ୍ସାହିତ କରିଥିଲେ ଏବଂ ବହୁ ତଥ୍ୟ ଯୋଗାଇ ଦେଇଥିଲେ । ସଂସଦର ସଦସ୍ୟ ଶ୍ରୀ ଖଗେନ୍ଦ୍ର କୁମାର ଦେବ ମଧ୍ୟ ବହୁ ତଥ୍ୟ ଯୋଗାଇ ଦେଇଥିଲେ । ରେଢ଼ାଖୋଲର ଅନ୍ୟ ଜଣେ ବିଶିଷ୍ଟ ବ୍ୟକ୍ତି ଶ୍ରୀଯୁକ୍ତ ଗୋକୁଳା ନନ୍ଦ ସାହୁ, ପୂର୍ବତନ ପଞ୍ଚାୟତ ସମିତିର ଚେୟାରମ୍ୟାନ୍‌ଙ୍କ ଠାରୁ ବହୁତ ତଥ୍ୟ ସଂଗ୍ରହ କରାଯାଇ ପାରିଥିବାରୁ ସେମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

ରେଢ଼ାଖୋଲ ରାଜବଂଶର ରାଜଗୁରୁ ତଥା ଗଦାଧରପୁର ଶାସନର ପଣ୍ଡିତ ଶ୍ରୀଯୁକ୍ତ ପୀତାମ୍ବର ଶତପଥିଙ୍କ ଯୋଗୁଁ ରେଢ଼ାଖୋଲ ରାଜ୍ୟର ବଂଶାବଳୀ ଏହି ପୁସ୍ତକରେ ସନ୍ନିବେଶିତ ହେବା ସମ୍ଭବ ହୋଇ ପାରିଲା । ରେଢ଼ାଖୋଲ ତର୍ଙ୍ଗିଚା ଗ୍ରାମର କବି ଶ୍ରୀଯୁକ୍ତ ଯୋଗୀନ୍ଦ୍ର ପ୍ରଧାନ ଜଣେ ଦଣ୍ଡନାଟର ଗୁରୁ ଓ ପାଲାଗାୟକ । ସେ ରେଢ଼ାଖୋଲର ସଂସ୍କୃତି ବିଷୟରେ ଅନେକ ତଥ୍ୟ ଯୋଗାଇ ଦେ଼ଇଥିବାରୁ ତାଙ୍କୁ ଏବଂ ପଣ୍ଡିତ ଶତପଥୀଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜଣାଉଛି ।

ଭୀମଭୋଇ ସାହିତ୍ୟ ସଂସ୍କୃତି ସଂସଦ, ନୟାପଲ୍ଲୀ ଭୁବନେଶ୍ୱରର ସଭାପତି ଶ୍ରୀଯୁକ୍ତ ନରସିଂହ ମିଶ୍ର, ଉପସଭାପତି ଶ୍ରୀଯୁକ୍ତ ଉଦୟ ନାରାୟଣ ପାଢ଼ୀ ଓ ସମ୍ପାଦକ ଶ୍ରୀଯୁକ୍ତ ଭାଗୀରଥି ନେପାକ ପାଣ୍ଡୁଲିପିଟିକୁ ଆମୂଳଚୂଳ ପାଠକରି ବହୁ ମୂଲ୍ୟବାନ ପରାମର୍ଶ ଦେଇଥିବାରୁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ବିଶେଷ କରି ପଣ୍ଡିତ ଶ୍ରୀଯୁକ୍ତ ଉଦୟନାରାୟଣ ପାଢ଼ୀ ପାଣ୍ଡୁଲିପିଟିକୁ ଆମୂଳଚୂଳ ସଂଶୋଧନ କରିଥିବାରୁ ମୁଁ ତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜଣାଉଛି ।

ନେତ୍ରୋତ୍ସବ
ଖନ୍ଦାଢ଼ିପ, ରେଢ଼ାଖୋଲ

ବିନୀତ ଲେଖକ
ଶ୍ରୀ ନିରାକାର ମହାଲିକ

# ସୂଚିପତ୍ର

# ପ୍ରଥମ ପରିଚ୍ଛେଦ

# ପୂର୍ବତନ ରେଢ଼ାଖୋଲ - ପରିଚିତି

ରେଢ଼ାଖୋଲ ରାଜ୍ୟ ଗଡ଼ଜାତ ମିଶ୍ରଣ ପୂର୍ବରୁ ଲମ୍ବରେ ପୂର୍ବରୁ ପଶ୍ଚିମକୁ ୮୦ କି.ମି. ଏବଂ ପ୍ରସ୍ଥରେ ୪୮ କି.ମି. ଅସାମଞ୍ଜସ୍ୟ କ୍ଷେତ୍ର ରୂପେ ବିଦ୍ୟମାନ । ଏହା ପୂର୍ବ ଦ୍ରାଘିମାର ୪୮°-୧୫ ମି ଠାରୁ ୮୪ °-୪୫ ମି ପର୍ଯ୍ୟନ୍ତ ଓ ଉତ୍ତର ଅକ୍ଷାଂଶର ୨୧° ମି.ରୁ ୨୧° ୧୫ ମି ବିସ୍ତୃତ ଥିଲା । ଏହାର ଉତ୍ତର ପୂର୍ବରେ ବାମଣ୍ଡା ରାଜ୍ୟ ଓ ପୂର୍ବରେ ପୂର୍ବତନ କଟକ ଜିଲ୍ଲାର ଅନୁଗୋଳ ସବ୍‌ଡିଭିଜନ୍, ପୂର୍ବ- ଦକ୍ଷିଣରେ ଆଠମଲ୍ଲିକ, ଦକ୍ଷିଣ-ପଶ୍ଚିମରେ ସୋନପୁର ରାଜ୍ୟ ଓ ପଶ୍ଚିମରେ ସମ୍ବଲପୁର ରାଜ୍ୟ ଅବସ୍ଥିତ ।* ଏହି ରାଜ୍ୟର କ୍ଷେତ୍ରଫଳ ୮୩୩ ବର୍ଗ ମାଇଲ ବା ୫୦୯୧୨୦ ଏକର । ସେତେବେଳେ ରେଖାଖୋଲରେ ୩୭୬ଟି ଗ୍ରାମ ଥିଲା ।

ଗଡ଼ଜାତ ମିଶ୍ରଣ ପରେ ୧.୪.୧୯୪୮ ଠାରୁ ଏହି ରାଜ୍ୟ ସମ୍ବଲପୁର ଜିଲ୍ଲାର ଏକ ଅନୁବିଭାଗ ହୋଇ ରହିଛି । ଏହାର କ୍ଷେତ୍ରଫଳ ୨୧୫୭.୪୭ ବର୍ଗ କିଲୋମିଟର ବା ୫,୩୩,୧୨୦ ଏକର । ସେଥି ମଧ୍ୟରୁ ୬୯୦୯୯,୦୩ ଏକର ଚାଷଜମି, ୨୦୫, ୧୧୨.୫୦ ଏକର ଅଣଚାଷ ଜମି ଓ ୨୫୮, ୯୦୮,୪୭ ଏକର ଜଙ୍ଗଲ ଭୂମି ରହିଛି । ବର୍ତ୍ତମାନ ଏହି ଅନୁବିଭାଗରେ ୪୨୧ଟି ଗ୍ରାମ ଗୋଟିଏ ତହସିଲ, ଦୁଇଟି ବ୍ଲକ୍ ରେଢ଼ାଖୋଲ ଓ ନାକଟି ଦେଉଳ, ଚାରୋଟି ଥାନା - ରେଢ଼ାଖୋଲ, ଚାରମାଲ, ନାକଟି ଦେଉଳ, କିସିଣ୍ଡା ଅବସ୍ଥିତ । ଏହି ତହସିଲ ୮ଟି ରେଭିନ୍ୟୁ ମଣ୍ଡଳରେ ବିଭକ୍ତ ଏବଂ ବ୍ଲକ୍ ଗୁଡ଼ିକ ୧୯ ଗୋଟି ଗ୍ରାମପଞ୍ଚାୟତରେ ବିଭକ୍ତ ହୋଇଅଛି । ୧୯୮୧ ଜନଗଣନା ଅନୁସାରେ ଏହାର ଲୋକସଂଖ୍ୟା ୮୨,୦୯୫ । ଏହା ମଧ୍ୟରୁ ଅନୁସୂଚିତ ଜାତି ୧୦୯୧୨ (୧୩.୨%) ଏବଂ ଆଦିବାସୀ ୧୭୩୪୫ (୨୧.୧%) ୧୯୭୧ ଜଣଗଣନା ଅନୁସାରେ ଲୋକସଂଖ୍ୟା ୮୬୪୫୮ ମଧ୍ୟରୁ ୯୧୮୫ ଅନୁସୂଚିତ ଜାତି ଏବଂ ୧୫୯୦୬ ଆଦିବାସୀ ଥିଲେ ।

ଗଡ଼ଜାତ ମିଶ୍ରଣ ପୂର୍ବରୁ ଏହାର ଜନସଂଖ୍ୟା ୩୫୭୧୬ ଏବଂ ଏହାର ବାର୍ଷିକ ଆୟ ପରିମାଣ ୨୧୩୫ରୁ ବଢ଼ି ଟ୮୭୦୦୦ ଥିଲା । ଇଂରେଜ ଶାସକ ରେଢ଼ାଖୋଲର ଟ ୨୦୦୦/- କର ବା ପେସ୍‌କସ୍ ଆଦାୟ କରୁଥିଲେ •। ରାଜାଙ୍କର ସନ୍ତକ ‘‘ଶଙ୍ଖପଦ୍ମ’’ ଥିଲା ।

ରେଢ଼ାଖୋଲର ପର୍ବତମାନଙ୍କ ମଧ୍ୟରେ କିସିଣ୍ଡାପଟେ ଗଣ୍ଡିଘୋଷରା (୫୭୬ ମିଟର), ଗାଇଘାଟ ପାହାଡ (୫୨୯ ମିଟର), ରେଙ୍ଗାଲମ୍ (୫୫୯ ମି), ଉଷାକୋଠୀ (୪୯୫ ମିଟର), ବୁଢ଼ାଝରନ୍ (୫୬୨ ମିଟର), ନାକଟି ଦେଉଳସ୍ଥ କଳାପାଟ ପର୍ବତ

---

* *Report of the administration of Rairakhol State 1943-44*

• *ପ୍ରାଚୀନ ଉତ୍କଳ - ଜଗବନ୍ଧୁ ସିଂହ*

(୪୦୬ ମିଟର), ସୁରାଧନ ପର୍ବତ (୫୫୫ ମି), ରାଇଲ ପର୍ବତ (୫୬୫ ମି), ଉଆସ ପର୍ବତ ( ୫୬୦ ମି) (ଆଠ ମଲ୍ଲିକ ସୀମା) ସୁରସୁରୀ ପର୍ବତ (୫୭୭ ମି), କଙ୍ଗ ନିକଟସ୍ଥ କଳାପାହାଡ (୫୨୨ ମି), ଶଙ୍ଖ ପର୍ବତ ( ୪୫୫ ମି), ବଣିମାଳିଆ ପର୍ବତ ( ୪୪୧ ମି), ବେଣଖାଇ (୨୯୭ ମି), ଦିତସରୀସ୍ଥ ଘୋରା ପର୍ବତ ( ୩୧୮ ମି), ଦେଉଳ ଗା (୩୨୫ ମି), କଣ୍ଡିଆଳି (୪୨୨ମି), ଭୀମମୁଣ୍ଡଳୀର କାଙ୍କୁରିଆ ପାହାଡ ( ୫୧୫ ମି), ଦେବଗଡ ସୀମାରେ ସେଓଝରଣ ପର୍ବତ (୪୫୨ ମି), ରାନ୍ (୬୭୧ ମି), କଟାସର ପର୍ବତ ( ୩୮୬ ମି), ରେଢ଼ାଖୋଲ ନିକଟସ୍ଥ ରାମପୁର (୪୬୦ ମି), ସୋଡୋ ପର୍ବତ ( ୫୯୮ ମି), ଖୋଲଗଡର ୫ମ ପର୍ବତ (୫୫୪ ମି), ବୁର୍ଡାର ଭାଲୁ ଦଳି ( ୫୬୪ ମି), ବନ୍ତଲୋଇ (୫୪୯ ମି), ନଳିଆ ପର୍ବତ (୪୨୮ ମି), ହେମାମୁରାର ବିନ୍ଧ୍ୟବାସୀ ପର୍ବତ (୪୮୭ ମି), ଚଣ୍ଡିଲି ମୁଣ୍ଡିଆ (୪୭୭ ମି), ବଂଶାଜାଳର ମେରାମପଚା (୪୩୨ ମି), ଲୁହାଧରା ପର୍ବତ ( ୪୪୦ମି), ଚୂରମାନୀ ପର୍ବତ (୪୩୫ ମି), ତୋଳାବନ୍ଧା ପର୍ବତ (୬୦୦ମି), ସୁଆଣି ପର୍ବତ (୪୮୭ ମି), ଚାରଗୁଣି ପର୍ବତ (୫୮୦ ମି), କଣ୍ଡଲପର୍ବତ (୪୭୫ ମି), ଏହା ବ୍ୟତୀତ ଛୋଟ ଛୋଟ ପର୍ବତ ଶ୍ରେଣୀ ରହିଛି ।

ସେହିପରି ନଦୀ ନାଳ ମଧ୍ୟରେ ଶଙ୍ଖ ଓ କୋଇଲି ନଦୀରୁ ବ୍ରାହ୍ମଣୀ ନଦୀର ସୃଷ୍ଟି ପରି କିସିଣ୍ଡା ଅଞ୍ଚଳରୁ ଶଙ୍ଖ ଓ କୋଇଲି ନାଳରୁ ଟିକିରାନଦୀର ସୃଷ୍ଟି । ଅବଶ୍ୟ ନାକଟି ଦେଉଳ ନିକଟସ୍ଥ ଟିକିରାନଦୀର ଚମ୍ପାଳୀ ନାଳ ଓ କୋଟାସାଗର ନାଳ (ଗିରିଷନ୍ଦ୍ର ପୁର ନାଳ ) ପୂର୍ବରୁ ମିଶିଛି । ଟିକିରା ନଦୀ ବ୍ରହ୍ମଣୀ ନଦୀର ଉପନଦୀ । ଏହା ରେଢ଼ାଖୋଲ ସବ୍‌ଡିଭିଜନ ତଥା ନାକଟି ଦେଉଳ ବ୍ଲକର ପ୍ରଧାନ ନଦୀ । ରେଢ଼ାଖୋଲ ବ୍ଲକର କେରାଣ୍ଡିଯୋର ନାଳ ରେଢ଼ାଖୋଲ ବସ୍‌ଷ୍ଟାଣ୍ଡ ନିକଟରେ ବହିଯାଇ ମହାନଦୀରେ ମିଶିଛି । ସୁରୁବାଲି ଯୋର ଓ ତାର ଉପନଦୀ ବଛାଯୋର, ନାକାଣୀ ନାଳ ରତାଖଣ୍ଡିନାଳ ଓ ଶୁଖାଯୋର ନାଳ ମହାନଦୀରେ ମିଶିଛି । ସେହିପରି ହରିହର ଯୋରନାଳ ଓ ତାର ଉପନାଳ ଦାନ୍ତୀ ଯୋର, ବାମ୍ନୁଯୋର, ଛାମୁଯୋର, ସିଆନଯୋର ଓ କୁସୁମ ଯୋର ରେଢ଼ାଖୋଲ ସୀମାରୁ ବହିଯାଇ ସୋନପୁରର ବୀର ମହାରାଜପୁର ମଧ୍ୟରେ ପ୍ରବାହିତ ହୋଇ ମହାନଦୀରେ ମିଶିଛି ।

ଉପରୋକ୍ତ ବଡ଼ ବଡ଼ ନାଳ ବ୍ୟତୀତ ଆଉସବୁ ଛୋଟ ନାଳ ମଧ୍ୟରେ ବାର ବାଙ୍କ ନାଳ, ସୁଆଗୀଝରଣ, କଣ୍ଡିଆଳି ନାଳ, ଝରବେଳା ନାଳ (ଖାରବେଳ ନାଳ), ଖାଲଝୋରାନାଳ, ବଡ଼ଝୋରାନାଳ, ଟାଲ ନିକଟସ୍ଥ କୁଟୁଣିଆ ନାଳ, ଚମାଣ୍ଡୁ ନାଳ, ଅରଖେଇ ନାଳ, ବଳମର ଅନ୍ଧାର ନାଳ ପ୍ରଧାନ ।

ଜଙ୍ଗଲ ବିଭାଗ -

ରେଢ଼ାଖୋଲଠାରେ ଜଙ୍ଗଲ ବିଭାଗର ଏକ ଜିଲ୍ଲା ଜଙ୍ଗଲ ଅଧିକାରୀ ରହି ଜଙ୍ଗଲ ସଂରକ୍ଷଣ ଓ ପରିଚାଳନା ଦାୟିତ୍ୱ ବହନ କରୁଥିଲେ । ନାକଟି ଦେଉଳ, କିସିଣ୍ଡା, ଚାରମାଳ, ରାମପୁର ଠାରେ ଚାରିଜଣ ରେଞ୍ଜର ରହି ସଂରକ୍ଷିତ ଜଙ୍ଗଲର ଦାୟିତ୍ୱ ବହନ କରନ୍ତି । ଏହାର ହାତୀଧରା ଜଙ୍ଗଲ, ବାଲିକିଆରୀ ଜଙ୍ଗଲ, ଖୋଲଗଡ ଜଙ୍ଗଲ, ମୁଖ୍ୟ ଜଙ୍ଗଲ । ଏଠାରେ ଶାଳ, ପିଆଶାଳ, ଅଶନ, ଶିଶୁ, ଅର୍ଜ୍ଜୁନ, ସେଣା, କେନ୍ଦୁ ପ୍ରଭୃତି ପ୍ରଧାନ ପ୍ରଧାନ ବୃକ୍ଷ ସବୁ ଦେଖିବାକୁ ମିଳେ ।

ଏଠାରେ କେନ୍ଦୁପତ୍ରର ଜଣେ ଜିଲ୍ଲା ଜଙ୍ଗଲ ଅଧିକାରୀ ରହି କେନ୍ଦୁପତ୍ର ତୋଳାଇ, ବନ୍ଧାଇ ପ୍ରଭୃତିର ଦାୟିତ୍ୱ ନେଇଛନ୍ତି ।

ଏଠାରେ ଜଣେ ଫରେଷ୍ଟ (ଜଙ୍ଗଲ) କରପୋରେସନ୍‌ର ଡିଭିଜନାଲ ମ୍ୟାନେଜର ରହି କାଠ ଓ ବାଉଁଶର ସଂଗ୍ରହ ଓ ବିକ୍ରୟ କରନ୍ତି ।



## ଦ୍ୱିତୀୟ ପରିଚ୍ଛେଦ

# ରେଢ଼ାଖୋଲ ରାଜପରିବାରର ଇତିହାସ

ରେଢ଼ାଖୋଲ ରାଜ୍ୟକୁ ପାଟଣାର ଚୌହାନ ବଂଶର ପ୍ରତିଷ୍ଠାତା ରମେଇଦେବ ପ୍ରଥମେ ପୃଥକ କରି ନିଜ ରାଜ୍ୟରେ ମିଶାଇଥିଲେ । ସେ ବାମଣ୍ଡା ରାଜ୍ୟ ଜୟକରି ସେଥିରୁ ରେଢ଼ାଖୋଲକୁ କରଦରାଜ୍ୟ ରୂପେ ନିଜ ଅଧୀନରେ ରଖିଥିଲେ । ପୂର୍ବରୁ ଏହା ବାମଣ୍ଡା ରାଜ୍ୟର କରଦ ରାଜ୍ୟ ରୂପେ ରହି ଆସିଥିଲା । ସମ୍ବଲପୁର ରାଜ୍ୟ ପ୍ରତିଷ୍ଠିତ ହେବା ପୂର୍ବରୁ ଅର୍ଥାତ୍ ୧୫୬୫ ଖ୍ରୀଷ୍ଟାବ୍ଦରେ ବଣାଇର କଦମ୍ବ ବଂଶୀୟ ରାଜା ରେଢ଼ାଖୋଲର ପାଞ୍ଚଜଣ କନ୍ଧ ଓ ଗଣ୍ଡ ସରଦାରମାନଙ୍କୁ ପରାସ୍ତ କରି ରେଢ଼ାଖୋଲ ଅଧିକାର କଲେ । ବଣାଇ କଦମ୍ବ ବଂଶର ଜଗଦୀଶ୍ୱର ଦେଓ ପ୍ରଥମେ ରେଢ଼ାଖୋଲ ରାଜ୍ୟ ପ୍ରତିଷ୍ଠା କଲେ । ସେ ପ୍ରଥମେ ବ୍ରାହ୍ମଣୀର ଉପନଦୀ ଟିକିରା କୂଳରେ ବିଜାଗଡ ନାମକ ସ୍ଥାନରେ ରାଜଧାନୀ ପ୍ରତିଷ୍ଠା କଲେ । ଏହି ଗଡର ଭଗ୍ନାବଶେଷ ବର୍ତ୍ତମାନ ବିଦ୍ୟମାନ । ଏହି ସ୍ଥାନଟି ଏକଦା ପୂର୍ବର ବାମଣ୍ଡା ରାଜ୍ୟର ରାଣକପୁଞ୍ଜଙ୍କର ରାଜଧାନୀ ଥିବାର ଅନୁମାନ କରାଯାଏ ।

ରେଢ଼ାଖୋଲର ଉତ୍ତର ସୀମା ଅର୍ଥାତ୍ ମାଳତୀଯୋର ପର୍ଯ୍ୟନ୍ତ ସୁରଗୁଜା ରାଜାଙ୍କ ଅଧୀନରେ ଥିଲା । ସମ୍ବଲପୁର ରାଜ୍ୟର ପ୍ରତିଷ୍ଠତା ମହାରାଜା ବଳରାମ ଦେବଙ୍କ ଦ୍ୱାରା ୧୫୭୦ ଖ୍ରୀଷ୍ଟାବ୍ଦରେ ଝାରସୁଗୁଡା ନିକଟସ୍ଥ ଭେଡେନ ନଦୀ କୂଳରେ ଯେଉଁ ଯୁଦ୍ଧ ହେଲା, ସେଥିରେ ସୁରୁଗୁଜା ରାଜା ପରାସ୍ତ ହୋଇ ପଳାୟନ କଲେ । ସେ ପଳାୟନ କରିବା ପରେ ବହୁ ଉପକରଣ ବଳରାମ ଦେବଙ୍କ ହସ୍ତଗତ ହୋଇଥିଲା । ବଳରାମ ଦେବ ବାମଣ୍ଡା ବିରୁଦ୍ଧରେ ଯୁଦ୍ଧ କରି କସ୍ତୂରୀ ଦେବଙ୍କୁ ପରାସ୍ତ କଲେ ଓ ରାମଚନ୍ଦ୍ର ଦେବଙ୍କୁ ରାଜଗାଦିରେ ବସାଇଲେ ଏବଂ ତାଙ୍କୁ ସାମନ୍ତରାଜା କରି ରଖିଲେ । ରାମଚନ୍ଦ୍ର ଦେବଙ୍କର ୧୬୧୮ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ହୋଇଥିଲା ।

ରେଢ଼ାଖୋଲ ରାଜ୍ୟର ପ୍ରତିଷ୍ଠାତା ଜଗଦୀଶ୍ୱର ଦେବଙ୍କ ପରେ ପାପଂତଦେବ ରାଜା ହେଲେ । ପାପଂତ ଦେବଙ୍କର ବାମଣ୍ଡା ରାଜା ରାମଚନ୍ଦ୍ର ଦେବ ଓ ବଣେଇ ରାଜାଙ୍କ ସଙ୍ଗେ ସୁ-ସମ୍ପର୍କ ଥିଲା । ବଣେଇ ରାଜା ଚନ୍ଦ୍ରଦେବଙ୍କ କନ୍ୟା, ବଳରାମ ଦେବଙ୍କ ପୁତ୍ର ହୃଦୟ ନାରାୟଣ ଦେବଙ୍କର ତୃତୀୟ ରାଣୀ ଥିଲେ । • ତେଣୁ ହୃଦୟ ନାରାୟଣ ଦେବଙ୍କ ପାପଂତ ଦେବଙ୍କ ସଙ୍ଗେ ସୁସମ୍ପର୍କ ଥିଲା ।

---

• *ସମ୍ବଲପୁର ଇତିହାସ-ଶିବ ପ୍ରସାଦ ଦାଶ (୧) ପ୍ରଥମ ରାଣୀ ଗାଙ୍ଗପୁର ରାଜକନ୍ୟା (୨) ୨ୟ ରାଣୀ ରାଜପୁତ ବଳରାମ ଚିହାଙ୍କ କନ୍ୟା (୩) ୩ୟ ରାଣୀ ବଣାଇ କଦମ୍ବବଂଶୀୟ ରାଜକନ୍ୟା ବଳଭଦ୍ର ୨ୟ ରାଣୀଙ୍କ ପୁତ୍ର ଓ ଗଣେଶ ରାୟ ବଣାଇ ରାଜକନ୍ୟାଙ୍କ ପୁତ୍ର ।*

ଅର୍ଜୁନ ଦେବ : (ଖ୍ରୀ ୧୬୨୫-୧୬୫୦) :

ପାପଂତ ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଅର୍ଜୁନ ଦେବ ରେଢ଼ାଖୋଲରେ ରାଜା ହେଲେ । ତାଙ୍କର କାଳକ୍ରମେ ବାମଣ୍ଡା ରାଜା ରାମଚନ୍ଦ୍ର ଦେବଙ୍କ ପୁତ୍ର ଦୁହ୍ଲଦେବଙ୍କ ସଙ୍ଗେ ସମ୍ପର୍କ ଠିକ ହୋଇଥିଲା ବଣାଇ-ବାମଣ୍ଡା ଯୁଦ୍ଧ ସମୟରୁ । ସେତେବେଳେ ବଣାଇ ରାଜକନ୍ୟାଙ୍କ ସଙ୍ଗେ ଦୁହ୍ଲା ଦେବଙ୍କ ସମ୍ପର୍କ ଭଲ ଥିଲା, କିନ୍ତୁ ବଣାଇ ରାଜା କାଳିଚରଣ ଇନ୍ଦ୍ର ଦେବ (ଖ୍ରୀ ୧୬୨୬ -୧୬୬୦) ଦୁହ୍ଲା ଦେବଙ୍କୁ କନ୍ୟାଦେବାକୁ ଅରାଜି ହେବାରୁ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ତାଳଚେର ରାଜା ଗୋପୀନାଥ ହରିଚନ୍ଦନ କାଳିଚରଣଙ୍କର ସମ୍ପର୍କୀୟ କକା ହୋଇଥିବାରୁ ତାଙ୍କୁ ସବୁ ସମୟରେ ସହଯୋଗ କରୁଥିଲେ । କିନ୍ତୁ ବଣେଇ ରାଜା ଯୁଦ୍ଧରେ ପରାସ୍ତ ହେଲେ ଏବଂ ଦୁହ୍ଲା ଦେବ ବଣେଇ ରାଜ କନ୍ୟାଙ୍କୁ ବିଭା ହେଲେ । ପାପଂତ ଦେବ ଓ ଅର୍ଜୁନ ଦେବଙ୍କର ସମ୍ବଲପୁର ରାଜବଂଶର ହୃଦୟ ନାରାୟଣଙ୍କ ପୁତ୍ର ମଧୁକର ଦେବଙ୍କ ସଙ୍ଗେ ସମ୍ପର୍କ ଭଲ ଥିବା ଜଣାଯାଏ । ବାମଣ୍ଡା ରାଜା ଦୁହ୍ଲା ଦେବଙ୍କ ପୁତ୍ର ମୁଖୀଦେବ ବାମଣ୍ଡାର ତ୍ରୟୋଦଶ ରାଜା । ସେ ପ୍ରବଳ ପରାକ୍ରମୀ ବଣେଇ ରାଜାଙ୍କ ସଙ୍ଗେ ଯୁଦ୍ଧରେ ପାଳଲହଡ଼ା ଜୟକରି ବଣାଇର ଏକ ଅଙ୍ଗ ଛେଦନ କରିଥିଲେ ।

ରେଢ଼ାଖୋଲ ରାଜା ଅର୍ଜୁନ ଦେବଙ୍କୁ ସମ୍ମୁଖ ଯୁଦ୍ଧରେ ପରାସ୍ତ କରି ନପାରି ଦିନେ ଅଜ୍ଞାତ ରାତ୍ରିରେ ତାଙ୍କର ରାଜଧାନୀ ଆକ୍ରମଣ କଲେ । ସେ ସମ୍ପୂର୍ଣ୍ଣ ଅପ୍ରସ୍ତୁତ ଥିଲେ । ସେତେବେଳେ ବ୍ରାହ୍ମଣୀର ଉପନଦୀ ଟିକିରା ନଦୀ ଦୁଇକୂଳ ଖାଉଥାଏ । ମୁଖୀଦେବ କେତେକ ଗଣ୍ଡ ଓ କନ୍ଧ ସରଦାରଙ୍କ ସାହାଯ୍ୟରେ ଅର୍ଜୁନ ଦେବଙ୍କ ସମସ୍ତ ବିଶ୍ୱସ୍ତ ଅଙ୍ଗରକ୍ଷୀଙ୍କ ସମେତ ସମସ୍ତଙ୍କୁ ମାରି ପକାଇଲେ । ତାଙ୍କର ଜଣେ ବିଶ୍ୱସ୍ତ ଶୁଦ ଅଙ୍ଗରକ୍ଷୀ ରାଣୀଙ୍କୁ ଜଙ୍ଗଲ ମଧରେ ଲୁଚାଇରଖି ତାର ନିଜଘର ନାକଟି ଦେଉଳର ଅପର କୂଳରେ ଏକ ଝୁମ୍ପୁଡି ଘରେ ରଖିଲେ । ରାଣୀ ଅନ୍ତଃସତ୍ତ୍ୱା ଥିଲେ । ସେଠାରେ ରାଣୀଙ୍କ ଗର୍ଭରୁ ଝୁନ୍ନୁରୁ ଦେବ (ବୈକୁଣ୍ଠ ଜେନାମଣି) ଜନ୍ମ ନେଲେ । ବାମଣ୍ଡା ରାଜା ମୁଖୀ ଦେବ ଟିକିରାନଦୀର ବାମକୂଳରେ ଥିବା ବିଜାଗଡକୁ ସମ୍ପୂର୍ଣ୍ଣ ଧ୍ୱଂସ କରି ରେଢ଼ାଖୋଲକୁ ନିଜ ରାଜ୍ୟରେ ମିଶାଇ ଦେଲେ ।

ଝୁନ୍ନୁରୁ ଦେବ: (ବୈକୁଣ୍ଠ ଜେନାମଣି) (୧୬୫୦-୧୬୭୫)

ଶୁଦମାନେ ରାଣୀ ଓ ତାଙ୍କ ଶିଶୁ ପୁତ୍ର ଝୁନ୍ନୁରୁଙ୍କୁ ନେଇ ଟିକିରାନଦୀ ପାର କରି ଲାଣ୍ଡିମାଳ ଓ ରାଇଲବାଟେ କଇଂ ଗ୍ରାମରେ ନେଇ ଲୁଚାଇ ରଖିଲେ । ବାମଣ୍ଡାର ରାଜା ମୁଖୀ ଦେବ ବିଭିନ୍ନ ଦିଗରେ ଗୁପ୍ତଚର ପଠାଇ ରାଣୀଙ୍କ ଠାବ କଲେ ।

ମୁଖୀଦେବ କଇଂର ଶୁଦମାନଙ୍କୁ ବିଭିନ୍ନ ନିର୍ଯ୍ୟାତନା ଦେଲେ, ହେଲେ ସେମାନଙ୍କ ମୁଖରୁ କୌଣସି ତଥ୍ୟ ନପାଇ, ସେମାନଙ୍କୁ ଗଛ ମୂଳରେ ବସାଇ ଗଛ କାଟି ତାଙ୍କ ଉପରେ ମଡାଇ କେତେକଙ୍କୁ ମାରିଦେଲେ, ଶେଷରେ ଶୁଦମାନେ ରାଣ ନିୟମ ପକାଇ

ଶପଥ କଲେ, ''ଆମେ ଯଦି ରାଣୀଙ୍କୁ କୌଣସି ଭୂମିରେ ରଖିଥିବୁ, ଆମର ମୂର୍ଦ୍ଧନା ଫାଟିଯିବ ।'' ସେଥିରେ ସନ୍ତୁଷ୍ଟହୋଇ ସେମାନେ ପଳାଇଗଲେ । କିନ୍ତୁ ସେଠାରେ ଶୁଦମାନେ ରାଣୀ ଓ ରାଜପୁତ୍ରଙ୍କୁ ଏକ ପୁରାତନ କଦମ୍ବ ଗଛର କୋରଡରେ ଲୁଚାଇ ରଖିଥିଲେ । ଶୁଦମାନେ ମିଛ କହନ୍ତି ନାହିଁ, ତେଣୁ ସେମାନେ କୌଣସି ଭୂମି ଉପରେ ନରଖି ରାଣୀଙ୍କୁ ଗଛ କୋରଡରେ ରଖିଥିଲେ ।

ଝୁନ୍ନୁରୁ ଦେବଙ୍କୁ କ୍ରମେ ଶୁଦମାନେ ରାଜାରୂପେ ମାନିଲେ । ଝୁନ୍ନୁର ଦେବ ଲୁଚି ଲୁଚି ଜଙ୍ଗ, ହିତସରା ଓ ରାଇଇର ପାହାଡ ଜଙ୍ଗଲ ମଧ୍ୟରେ ରହିଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ, ଅନୁଗୋଳ ରାଜାଙ୍କ କନ୍ୟା ପାଇଁ ହୋଇଥିବା ସ୍ୱୟଂମ୍ବର ସଭାରେ ବିନା ନିମନ୍ତ୍ରଣରେ ଝୁନ୍ନୁରୁ ଦେବ କେତେକ ଶୁଦ ଲୋକଙ୍କ ସହ ଯାଇ ପହଞ୍ଚିଲେ ଏବଂ ତାଙ୍କ ନିଜ ଧନୁରେ ଏକ ତୀର ମାରିବାରୁ ତାହା ଅନୁଗୋଳ ରାଜାଙ୍କ ପାଦତଳେ ଯାଇ ପଡ଼ିଲା । ଉପସ୍ଥିତ ରାଜନ୍ୟ ବୃନ୍ଦ ଆଶ୍ଚର୍ଯ୍ୟ ହୋଇ ଝୁନ୍ନୁରୁ ଦେବଙ୍କ ପରିଚୟ ଚାହିଁଲେ । ପରିଚୟ ଜାଣିଲା ପରେ ରାଜକନ୍ୟା ଝୁନ୍ନୁରୁ ଦେବଙ୍କ ବେକରେ ବରଣମାଳା ପିନ୍ଧାଇଲେ । ଅନୁଗୋଳ ରାଜା ବହୁ ଧନରନ୍ ଉପହାର ଦେଲେ । ଝୁନ୍ନୁରୁ ଦେବ କୁଞ୍ଜାମରାଠାରେ ନୂତନ ଗଡ ନିର୍ମାଣ କରି ସେଠାରେ ରହିଲେ । ଅନୁଗୋଳ ରାଜା ଝୁନ୍ନୁରୁ ଦେବଙ୍କୁ ଗଜପତି ରାଜାଙ୍କ ପ୍ରଦର ଜେନାମଣି ଉପାଧିରେ ଭୂଷିତ କଲେ । ସେହିଦିନଠାରୁ ସେ ଝୁନ୍ନୁରୁ ଜେନାମଣି ରୂପେ ପରିଚିତ ହେଲେ । ''କୁଞ୍ଜାମରାଗଡ'' ଝୁନ୍ନୁରୁ ଗଡ ରୂପେ ବର୍ତ୍ତମାନ ପରିଚିତ । ଝୁନ୍ନୁରୁ ଜେନାମଣି ଯୁଦ୍ଧରେ ବାମଣ୍ଡା ରାଜାଙ୍କୁ ହରାଇ ନିଜ ରାଜ୍ୟ ପୁନରୁଦ୍ଧାର କରିଥିଲେ ମଧ୍ୟ ତାଙ୍କ ରାଜ୍ୟ ଆକ୍ରମଣ କରି ପାରି ନଥିଲେ । ସେହି ସମୟରେ ବାମଣ୍ଡା ସ୍ୱାଧୀନ ହେବାକୁ ଚେଷ୍ଟା କରିବାରୁ ସମ୍ବଲପୁର ରାଜା ବଳିୟାର ସିଂହ ବାମଣ୍ଡା ଅଧିକାର କଲେ ଓ ଝୁନ୍ନୁରୁ ଜେନାମଣିଙ୍କ ସଙ୍ଗେ ଲଢ଼ାଇ କରି ପରାସ୍ତ କଲେ ଏବଂ ରେଢ଼ାଖୋଲକୁ ସମ୍ବଲପୁର ଅଧୀନସ୍ଥ କଲେ ।

ବଳୀୟାର ଦେବ ବାମଣ୍ଡା ରାଜାଙ୍କୁ ବନ୍ଦୀ କରି ସମ୍ବଲପୁର ଦୁର୍ଗରେ ଦୀର୍ଘକାଳ ରଖିଥିଲେ । ତାଙ୍କର ଆଶଙ୍କା ଥିଲା ଯେ, ଯେତେବେଳେ ସେ ଦୁର୍ଜ୍ଜୟ ରାଜ୍ୟ ବଣାଇ ଅଧିକାର କରିବେ, ବାମଣ୍ଡା ତାର ସନ୍ନିହିତ ରାଜ୍ୟ ହୋଇଥିବାରୁ କାଳେ ସେ ବଣାଇକୁ ସାହାଯ୍ୟ କରି ପାରେ, ଏହାଭାବି ବାମଣ୍ଡା ରାଜ୍ୟକୁ ମୁକ୍ତ କଲେ ନାହିଁ । କବି ଗଙ୍ଗାଧର ମିଶ୍ର ମହାରାଜା ବଳୀୟାର ସିଂହଙ୍କର ରାଜ ପଣ୍ଡିତ ଥିଲେ । ସେ ତାଙ୍କ ପ୍ରଣୀତ 'କୋଶଳା ନନ୍ଦ' କାବ୍ୟରେ ବଳୀୟାର ସିଂହ ଦେବଙ୍କର ଦୁଇଟି ଘୋଡାର ନାମ ପରଜଙ୍ଗ ଓ ଫତେଜଙ୍ଗ ଥିବାର ଲେଖିଛନ୍ତି । ସେ ପରଜଙ୍ଗ ଘୋଡାରେ ଚଢ଼ି ବଣାଇ ଆକ୍ରମଣ କରିଥିଲେ । ପାଳଲହଡା ସେତେବେଳେ ବଣାଇ ରାଜ୍ୟର ଏକ ଜମିଦାରୀ । ସେ ବଣାଇ ଅଧିକାର କରି ସମ୍ବଲପୁର ଅଠରଗଡ ଗଠନ କାର୍ଯ୍ୟ ସମ୍ପୂର୍ଣ୍ଣ କରିଥିଲେ । ରେଢ଼ାଖୋଲ ସେ ଅଠର ଗଡ ମଧ୍ୟରୁ ଅନ୍ୟତମ । ପୂର୍ଣ୍ଣାଙ୍ଗ ଅଠର ଗଡଜାତର ତାଲିକା ନିମ୍ନରେ ଦିଆଗଲା ।[*]

୧. ପାଟଣା, ୨. ସମ୍ବଲପୁର, ୩. ସୋନପୁର, ୪, ବାମଣ୍ଡା, ୫. ରେଢ଼ାଖୋଲ, ୬. ଗାଙ୍ଗପୁର, ୭. ବୌଦ, ୮. ଆଠମଲ୍ଲିକ, ୯. ଫୁଲଝର, ୧୦. ବଣାଇ, ୧୧. ରାୟଗଡ, ୧୨. ବରଗଡ, ୧୩. ଶକ୍ତି, ୧୪.ଚନ୍ଦ୍ରପୁର, ୧୫. ସାରଙ୍ଗଗଡ, ୧୬. ବିନ୍ଦ୍ରାନୂଆଗଡ, ୧୭. ଖଡିଆଳ, ୧୮. ବୋଡାସମ୍ବର ।

ଝୁନ୍ତୁରାଗଡ :-

ବାମଣ୍ଡା ରାଜା ଦୀର୍ଘକାଳ ବନ୍ଦୀଥିବାରୁ ଝୁନ୍ତୁରୁ ଜେନାମଣିଙ୍କୁ ନିଜ ରାଜ୍ୟ ସଜାଡ଼ି ନେବାକୁ ସୁବିଧା ହୋଇଥିଲା । ସେ କୁଆଁମୁରା ଝୁନ୍ତୁରୁଗଡକୁ ସୁଦୃଢ଼ କରି ଟିକିରା ନଦୀକୁ ଗଡର ତିନି ପାର୍ଶ୍ୱରୁ ମାଟି ଖୋଳାଇ ଅଶ୍ୱଖୁରାକୃତି କରାଇଥିଲେ ଏବଂ ଅନ୍ୟ ପଟରେ ଦୁର୍ଗମ ପାର୍ବତ୍ୟ ଭୂମିକୁ ବିଶ୍ୱସ୍ତ ସୈନ୍ୟମାନଙ୍କୁ ଜଗାଇଥିଲେ । ଗଡର ଚତୁଃପାର୍ଶ୍ୱରେ ବାଉଁଶ ବୁଦାମାନ ଲଗାଇଥିଲେ । ବର୍ତ୍ତମାନ ମଧ ଏହାର ଚିହ୍ନରହିଛି । ଟିକିରା ନଦୀର ଦକ୍ଷିଣ କୂଳରେ କର୍ମଚାରୀମାନଙ୍କ ପାଇଁ ନୂତନ ବସ୍ତି ବସାଇଥିଲେ । ସେ ସେଠାରେ ସୂର୍ଯ୍ୟ ମହେଶ୍ୱରୀଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ରେଢ଼ାଖୋଲର ଅଧିଷ୍ଠାତ୍ରୀ ଦେବୀ 'ପାଞ୍ଚଖଣ୍ଡା' ସେଠାରେ ମଧ ସ୍ଥାପନ କରିଥିଲେ । ଏଠାରୁ ଅଳ୍ପଦୂରରେ ଏକ ଗଡ ଖାଇ ଉପରକୁ ଟିକିରାର ଦକ୍ଷିଣ କୂଳରେ ଏକ ଚୂନ ଦେବୀ (ପଥର ମଣ୍ଡପ) ଥିବାର ଲେଖକ ଦେଖିଥିଲେ । (କିନ୍ତୁ ପରେ ଫଟୋ ଉତ୍ତୋଳନ କରାଯିବା ସମୟରେ ବେଦୀଟିକୁ କିଏ ନଷ୍ଟ କରିଦେଇ ପଥର ବୋହି ନେଇ ଥିବାର ଜଣାପଡ଼ିଲା ।) ସମ୍ଭବତଃ ଏହି ମଣ୍ଡପରେ ରାଜସଭା ବସୁଥିଲା । ଗୋଟିଏ ଛୋଟ କାଠପୋଲ ସାହାଯ୍ୟରେ ଲୋକେ ନଦୀ ପାର ହେଉଥିଲେ । ଶତ୍ରୁ ଆକ୍ରମଣ ସମୟରେ ପୋଲଟିକୁ ନଷ୍ଟ କରି ଦେଉଥିଲେ । ନଦୀର ଦକ୍ଷିଣ କୂଳରେ ଆମ୍ବ, ପଣସ, ଖଜୁରୀ ବଗିଚା ପରବର୍ତ୍ତୀ କାଳରେ ମଧ ଥିଲା । (ରାଜା ଝୁନ୍ତୁରୁ ଦେବଙ୍କ ସମ୍ପର୍କ ମଧ ସମ୍ବଲପୁରର ଓ ତାଳଚେରର ରାଜାଙ୍କ ସଙ୍ଗେ ଭଲ ଥିଲା ।) (ଟିଟାଉ ପୃ ୩୦୩ ପ୍ରତ୍ନତତ୍ତ୍ୱ-ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ, ଦ୍ୱିତୀୟ ଭାଗ) ।

ଭାଗୀରଥି ଜେନାମଣି - (ଖ୍ରୀ ୧୬୭୫-୯୫)

ଝୁନ୍ତୁରୁ ଜେନାମଣିଙ୍କ ପରେ ଭାଗୀରଥି ଦେଓ ଜେନାମଣି ରାଜସିଂହାସନ ଅଧିକାର କଲେ । ସେ ରେଢ଼ାଖୋଲ ରାଜ୍ୟକୁ ସୁରକ୍ଷା କରିବାକୁ ବିଶେଷ ଯତ୍ନ ନେଇଥିଲେ । ସେ ରାଜ୍ୟ ବାହାରୁ ବିଶେଷ କରି ତାଳଚେର ଓ ଅନୁଗୋଳ ଅଞ୍ଚଳରୁ ଦକ୍ଷ ଲୋକମାନଙ୍କୁ ଆଣି ନିଜ ରାଜ୍ୟରେ ଜମି ଯୋଗାଇ ବସତି ସ୍ଥାପନ କଲେ । ବ୍ରାହ୍ମଣ ''ଶତପଥୀ'' ସାଙ୍ଗିଆ ଓ ଚଷାମାନଙ୍କୁ ବିଶେଷ କରି ଗଜଗୋତ୍ର ଚଷା ଚାଷର ଉନ୍ନତିପାଇଁ ରଥୀ କୁମ୍ଭାର, ସାରଥୀ ପାଣ, ଗଡ ଜଗିବା ପାଇଁ ଅଣାଇ ରେଢ଼ାଖୋଲରେ ନୂତନ ବସତି ସ୍ଥାପନ କଲେ । ସେଥିପାଇଁ ରେଢ଼ାଖୋଲ ଅଞ୍ଚଳରେ ବର୍ତ୍ତମାନ ଲୋକମୁଖରୁ ଶୁଣାଯାଏ:-

''ରାଜା ଭାଗୀରଥି, ବ୍ରାହ୍ମଣ ପଥୀ,
ଚଷା ହାତୀ, କୁମ୍ଭାର ରଥୀ
ପାଣ ସାରଥୀ
ରେଢ଼ାଖୋଲ ରାଜ୍ୟେ, କଲେ ଆଗତି ।''

ରାଜା ଭାଗୀରଥିଙ୍କ ପରେ ଯୁବରାଜ ଗଦାଧର ଦେଓ ଢେଙ୍କାମଣି ସିଂହାସନ ଆରୋହଣ କଲେ । ତାଙ୍କ ସମୟରେ ବ୍ରାହ୍ମଣ୍ୟ ଧର୍ମର ବିଶେଷ ଉନ୍ନତି ହୋଇଥିଲା । ସେ ପୁରୀର ବୀର ରାମଚନ୍ଦ୍ର ପୁର ଶାସନରୁ କାତ୍ୟାୟନ ଗୋତ୍ରର ବ୍ରାହ୍ମଣମାନଙ୍କୁ ଆଣି ତାଙ୍କ ନାମରେ ଗଦାଧରପୁର ଶାସନ ବସାଇ ସେଠାରେ ବସବାସ କରାଇ ଥିଲେ । ଏହି ଶାସନ ଝୁନ୍ଝୁରୁଗଡଠାରୁ ମାତ୍ର ତିନି କିଲୋମିଟର ଦୂରରେ ଅବସ୍ଥିତ । ରାଜା ଗଦାଧର ଢେଙ୍କାମଣିଙ୍କ ରାଜଗୁରୁ ଶ୍ୟାମ ସୁନ୍ଦର ଶତପଥୀ ପ୍ରଥମେ ପୁରୀରୁ ଆସିଥିବା ଜଣାଯାଏ । ବର୍ତ୍ତମାନ ପର୍ଯ୍ୟନ୍ତ ସେହି ବଂଶର ଶ୍ରୀ ପୀତାମ୍ବର ଶତପଥୀ ରେଢ଼ାଖୋଲ ରାଜବଂଶର ରାଜଗୁରୁ । ରାଜା ଭାଗୀରଥି ବାମଣ୍ଡା ରାଜା ସଦାନନ୍ଦଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିବା ଜଣାଯାଏ । ସେ ବ୍ରାହ୍ମଣମନ୍ତ୍ରୀ ରଖିଥିଲେ । ଗଦାଧର ଢେଙ୍କାମଣିଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ସଦାନନ୍ଦ ଢେଙ୍କାମଣି ରାଜା ହେଲେ । ସଦାନନ୍ଦଙ୍କ ପରେ ପଦ୍ମନାଭ ଢେଙ୍କାମଣି, ତାଙ୍କ ପରେ ତାଙ୍କ ପୁତ୍ର ବୀରବର ଢେଙ୍କାମଣି ରାଜା ହେଲେ । ବୀରବର ଢେଙ୍କାମଣିଙ୍କ ରାଜତ୍ୱର ଶେଷ ଭାଗରେ ମରହଟ୍ଟା ବର୍ଗୀଙ୍କ ଆକ୍ରମଣ ଆରମ୍ଭ ହେଲା । ବୀରବରଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଛତ୍ରବୀର ଢେଙ୍କାମଣି ରାଜା ହେଲେ ।

ରାଜା ଛତ୍ରବୀର ଢେଙ୍କାମଣିଙ୍କ ସମୟରେ ମରହଟ୍ଟାବର୍ଗୀଙ୍କ ଆକ୍ରମଣ ପ୍ରବଳ ହେଲା । ପ୍ରଥମ ରଘୁଜୀ ନାଗପୁରର ପ୍ରଥମ ଭୋନସ୍ଲା ଥିଲେ । ସେ ପୂର୍ବରେ ଛତିଶଗଡ ଅଧିକାର କରି ବଙ୍ଗଳା ଆକ୍ରମଣ କଲେ । ବଙ୍ଗଳା ନବାବ ଆଲିବର୍ଦ୍ଦି ଖାଁ ତାଙ୍କୁ କଟକ ପ୍ରଦେଶ ଛାଡି ଦେଇ ଖ୍ରୀ ୧୭୫୧ରେ ତାଙ୍କ ସଙ୍ଗେ ସନ୍ଧି କରିଥିଲେ । ତେଣୁ ମରହଟ୍ଟାମାନେ କଟକ ଯିବା ଆସିବା କରିବା ପାଇଁ ସମ୍ବଲପୁର ରାଜ୍ୟ ରାଜାଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ତାଙ୍କୁ ଉପହାର ଦେଉଥିଲେ । ରଘୁଜୀଙ୍କ ପରେ ଜାନୁଜୀ ଭୋନସ୍ଲା (୧୭୫୫-୭୨) ସମ୍ବଲପୁର ଆକ୍ରମଣ କରି ପରାସ୍ତ ହୋଇ ଫେରିଲେ । ଦ୍ୱିତୀୟ ରଘୁଜୀ ୧୭୮୮ରେ ଭୋନସ୍ଲା ହୋଇ ସମ୍ବଲପୁର ରାଜ୍ୟରେ ଲୁଣ୍ଠନ ଆରମ୍ଭ କଲେ । ସେମାନେ ମହାନଦୀ ପଥରେ ଯିବାବେଳେ ସାରଙ୍ଗଗଡ, ସମ୍ବଲପୁର, ବୌଦ, ସୋନପୁର, ରେଢ଼ାଖୋଲ ରାଜାଙ୍କ ଠାରୁ ରସଦ ଓ ଚୌଥ ଦାବି କରିବା ଆରମ୍ଭ କଲେ । ପଥରେ ଗାଁ ଗଣ୍ଡା ଲୁଣ୍ଠନ କଲେ । ଦଳ ଦଳ ମରହଟ୍ଟା ସୈନିକ ଟଟ୍ଟୁ ଘୋଡା ପିଠିରେ ବସି ଗ୍ରାମମାନଙ୍କରେ ଆକସ୍ମିକ ଭାବରେ ପ୍ରବେଶ କରି ସେମାନଙ୍କର ସର୍ବସ୍ୱ ଲୁଣ୍ଠନ କରି ଗ୍ରାମମାନ ପୋଡି ଦେଉଥିଲେ । ମରହଟ୍ଟାମାନଙ୍କର ଅତ୍ୟାଚାର, ପୋଡାଜଳା, ଲୁଣ୍ଠନ, ହତ୍ୟାକାଣ୍ଡ, ନିତ୍ୟ ନୈମିତ୍ତିକ

କାର୍ଯ୍ୟ ଥିଲା । ପୋତାଧନ ଓ ଗୁପ୍ତଧନ ଦେଖାଇବା ନିମନ୍ତେ ଗୃହସ୍ଥମାନଙ୍କୁ ମାରିପିଟି ଗୃହରୁ ତଡ଼ିଦେବା, ତୈଳାକ୍ତ ବସ୍ତ୍ରଗୁଡାଇ ନିଆଁ ଲଗାଇବା, ହାଣି ଦେବା ସଙ୍ଗେ ସଙ୍ଗେ ସୁନ୍ଦରୀ ରମଣୀମାନଙ୍କୁ ଅତ୍ୟାଚାର କରୁଥିଲେ ଓ ନିର୍ଯ୍ୟାତନା ଦେଉଥିଲେ । ଲୋକମାନେ ଦୁଇଚାରି ଜଣ ମରହଟ୍ଟା ଦେଖିଲେ ଗୃହଛାଡ଼ି ଜଙ୍ଗଲରେ ଲୁଚୁଥିଲେ । ମରହଟ୍ଟାଙ୍କ ଅତ୍ୟାଚାର ପରି ଦୁଷ୍ଟ ଓ ଶ୍ରମଜୀବୀ ଶ୍ରେଣୀର ଲୋକମାନେ ଧନ ସଞ୍ଚୟ ଓ ଜୀବିକା ନିର୍ବାହ କରିବା ପାଇଁ ଏହିପରି ପନ୍ଥା ଅବଲମ୍ବନ କରୁଥିଲେ । ସେମାନେ ବିଶେଷତଃ ଗଣ୍ଡମାନେ ଅଧିକରୁ ଅଧିକ ଏହି ନୂତନ ପ୍ରଣାଳୀ ଅବଲମ୍ବନ କରିବାରୁ ଲୋକମାନେ ଏହି ଉପଦ୍ରବକୁ ''ଗଣ୍ଡମାରୁ'' ଆଖ୍ୟା ଦେଲେ । ସେମାନେ ଧନୀ ଗୃହସ୍ଥମାନଙ୍କୁ ରାତିରେ ଆକ୍ରମଣ କରୁଥିଲେ ।

ମରହଟ୍ଟାମାନଙ୍କ ଆକ୍ରମଣରେ ଅତିଷ୍ଠ ହୋଇ ରାଜା ଛତ୍ରବୀର ଜଗଦେବ ନିଜର ରାଜଧାନୀ ଝୁନ୍ସୁରୁଗଡକୁ ଛାଡି ଖୋଲଗଡ ସଂରକ୍ଷିତ ଜଙ୍ଗଲରେ ଏକ ପାର୍ବତ୍ୟ ଦୁର୍ଗକୁ ରାଜଧାନୀ ସ୍ଥାନାନ୍ତରିତ କଲେ । ଅବଶ୍ୟ ସେତେବେଳେ ବାମଣ୍ଡା ରାଜ୍ୟର ପରିସ୍ଥିତି ଭଲ ନଥିଲା । ବାମଣ୍ଡା ସଙ୍ଗେ ରେଢ଼ାଖୋଲର ପୂର୍ବର ଶତ୍ରୁତା ଥିଲା । ବାମଣ୍ଡାର ଉନବିଂଶ ରାଜା ହାତୁଦେବଙ୍କ ଶାସନରେ ଅତିଷ୍ଠ ହୋଇ ସେଠାରେ ପ୍ରଜାମେଳି ହୋଇଥିଲା । ଲୁଠ ଠାକୁର, ବରଜୁ ଦେହୁରୀ, ଝାଣ୍ଟୁମାଝୀ ପ୍ରଭୃତି ଏହି ମେଳିରେ ନେତୃତ୍ୱ ନେଇ ହାତୁଦେବଙ୍କୁ ତଡ଼ିଦେଲେ । ହାତୁଦେବ ବଣାଇ ରାଜାଙ୍କ ଠାରେ ଶରଣ ପଶିଲେ । ପ୍ରଜାମାନେ ହାତୁଦେବଙ୍କ ପୁତୁରା ଚନ୍ଦ୍ରଶେଖର ଦେବଙ୍କୁ ''ଦୁଲାଇଗଡ'' ଠାରେ ଅଭିଷେକ କଲେ । ସମ୍ଭବତଃ ସେ ଉପରୋକ୍ତ କାରଣରୁ ବାମଣ୍ଡାର ନିଜ ରାଜଧାନୀ ଦେବଗଡ ପରିବର୍ତ୍ତେ ଦୁଲାଇଗଡକୁ ପସନ୍ଦ କଲେ ।

ସମ୍ବଲପୁରର ମହାରାଜା ଜୟନ୍ତ ସିଂହ ଦେବ (ଖ୍ରୀ ୧୭୮୧-୧୮୧୮) ରାଜା ହେଲେ । ତାଙ୍କ ସମୟରେ ମରହଟ୍ଟାମାନଙ୍କ ଦୌରାତ୍ମ୍ୟ ବୃଦ୍ଧି ପାଇଲା, ହେଲେ ସମ୍ବଲପୁର ଓ ରେଢ଼ାଖୋଲ ସହ ଅଠରଗଡ ବଣ ଜଙ୍ଗଲ ଓ ପାହାଡ ପର୍ବତରେ ଭରି ରହିଥିବାରୁ ମରହଟ୍ଟାମାନେ ଗଡମାନଙ୍କର ଖୋଜ ଖବର ପାଉନଥିଲେ । ରେଢ଼ାଖୋଲର ଖୋଲଗଡ ପରି, ରାଜ୍ୟ ମଧରେ ବହୁ ପାର୍ବତ୍ୟ ଆଶ୍ରୟ ଓ ଗୁମ୍ଫାମାନ ରହିଥିବାରୁ ଶତ୍ରୁ ଆକ୍ରମଣ ବେଳେ ରାଜା ଓ ରାଜପରିବାର ଓ ସୈନ୍ୟମାନେ ତାର ମୁକାବିଲା କରିପାରୁଥିଲେ । ଏହି ସବୁ କାରଣରୁ ରାଜାଙ୍କ ପରି ସାମନ୍ତମାନେ ମଧ ବଳବାନ ଓ ଦୁର୍ଦ୍ଧର୍ଷ ଥିଲେ ।

ନାଗପୁରରୁ କଟକକୁ ଯୁଦ୍ଧ ସାମଗ୍ରୀ ଓ ସୈନ୍ୟବାହିନୀ ପଠାଇବା ପାଇଁ ସମ୍ବଲପୁର ପଥ ହିଁ ଏକ ମାତ୍ର ପଥ ଥିଲା । କର୍ମଚାରୀମାନେ ସହଜରେ ମହାନଦୀ ବାଟେ ନାଗପୁରରୁ, ଚାନ୍ଦାରୁ ଓ ରନ୍‌ପୁରରୁ କଟକକୁ ଯିବା ଆସିବା କରିପାରୁଥିଲେ । ଦ୍ୱିତୀୟ ରଘୁଜୀ ଭୋଁସ୍ଲା ବାରମ୍ବାର ସମ୍ବଲପୁର ଆକ୍ରମଣ କରି ବ୍ୟତିବ୍ୟସ୍ତ କରି ପକାଇଲେ । ଶେଷରେ ଜୟନ୍ତ

ସିଂହଙ୍କ ମନ୍ତ୍ରୀ ଗୋବିନ୍ଦ ଦେବାନ ବାଧ ହୋଇ ମରହଟ୍ଟାମାନଙ୍କୁ ଚୌଥ ଦେବାକୁ ସ୍ୱୀକାର କଲେ । ୧୭୯୯ ଖ୍ରୀଷ୍ଟାବ୍ଦ ଫଗୁଣ ମାସରେ ନାଗପୁରର ବ୍ୟାଙ୍କୋଜୀ ଭୋନସ୍ଲା ଦୋଳଯାତ୍ରା ପାଇଁ ମହାନଦୀ ବାଟେ ପୁରୀ ଯାଉଥିଲେ । ସମ୍ବଲପୁରର ଦେବାନ୍ ଗୋବିନ୍ଦ ମୋହନ ସିଂହ କାହିଁକି ତାଙ୍କୁ ଦେଖା କଲେ ନାହିଁ ବୋଲି କଟକରୁ ଭୂପ ସିଂହକୁ ପଠାଇ ସମ୍ବଲପୁର ଆକ୍ରମଣ କଲେ ।

ନୀଳକଣ୍ଠ ଢେକାମଣି :- (ଖ୍ରୀ ୧୭୭୫-୧୭୯୦)

ରେଢ଼ାଖୋଲ ରାଜା ଛତ୍ରବୀରଙ୍କ ପରେ ତାଙ୍କ ପୁତ୍ର ନୀଳକଣ୍ଠ ଢେକାମଣି ନୂତନ ରାଜଧାନୀ ଖୋଲଗଡଠାରେ ଅଭିଷିକ୍ତ ହେଲେ । ସେ ମରହଟ୍ଟା ଆକ୍ରମଣରୁ ରକ୍ଷା ପାଇବା ପାଇଁ ରାଜଧାନୀ ଖୋଲଗଡକୁ ସୁଦୃଢ଼ କଲେ । ଦୁର୍ଗର ଚତୁଃପାର୍ଶ୍ୱରେ ପରିଖା ଖୋଳାଇଲେ ଏବଂ କଣ୍ଟା ବାଉଁଶ ବୁଦା ଲଗାଇଲେ । ପୁଷ୍କରିଣୀ ଖୋଳାଇଲେ । ଖୋଲଗଡର ନୀଳକଣ୍ଠେଶ୍ୱର ଶିବ ମନ୍ଦିର, ରାଜା ନୀଳକଣ୍ଠ ଢେକାମଣିଙ୍କ କୀର୍ତ୍ତି । ଖୋଲଗଡର ଏକ ଗୁପ୍ତଦ୍ୱାର ବାଟେ ଶତ୍ରୁ ଆକ୍ରମଣ ସମୟରେ ପାହାଡ ଶୀର୍ଷକୁ ଯିବାକୁ ହୁଏ । ସେଠାରୁ ଏକ ସଙ୍କୀର୍ଣ୍ଣ ପଥ ଦେଇ ଲଇଡ଼ା ବା ଲାଞ୍ଜା ବାଟେ ଡଇଁଚା ଏବଂ ଅନ୍ୟ ପଥରେ ରେଢ଼ାଖୋଲ କିମ୍ବା କିସିଣ୍ଡା ଯାଇ ହୁଏ । ପାହାଡର ଶୀର୍ଷରୁ ଏକ ଚିରସ୍ରୋତା ଝରଣା ବହିଆସି ଦୁର୍ଗ ପାର୍ଶ୍ୱରେ ପ୍ରବାହିତ ହେଉଥିଲା । ଝରଣାଟି ବର୍ତ୍ତମାନ ମଧ ପ୍ରବାହିତ ହେଉଛି ।

ରାଜା ନୀଳକଣ୍ଠଙ୍କ ପରେ ତାଙ୍କ ପୁତ୍ର ବୀରବୁଢ଼ା ଢେକାମଣି ରାଜା ହେଲେ । ବୀର ବୁଢ଼ାଙ୍କ ସମୟରେ ଭୂପସିଂହ ଖ୍ରୀ ୧୮୦୦ ଏପ୍ରିଲ୍‌ରେ ସମ୍ବଲପୁର ଦୁର୍ଗ ଅଧିକାର କଲେ । ଭୋନ୍‌ସ୍ଲାଙ୍କ ପ୍ରତିନିଧି ରୂପେ ଭୂପ ସିଂହ ସମ୍ବଲପୁର ଶାସନ କଲେ । ସେ ରାଜସ୍ୱ ଆଦାୟ କରି ନାଗପୁରକୁ ପଠାଇଲେ ନାହିଁ କିମ୍ବା ସୈନ୍ୟମାନଙ୍କୁ ଦରମା ଦେଲେ ନାହିଁ । ଦରମା ନପାଇ ସୈନ୍ୟମାନେ ପ୍ରଜାମାନଙ୍କୁ ଲୁଣ୍ଠନ କଲେ । ସାମନ୍ତ ରାଜାମାନଙ୍କୁ ଅଧିକ ରାଜସ୍ୱ ଦେବାକୁ ବାଧ କରାଗଲା । ନ ଦେଲେ ପିଲାମାନଙ୍କୁ ମାଡ, ଉତ୍ତପ୍ତ ଲୌହରେ ଦାଗି ଦିଆଗଲା, ଗରମ ତେଲ କିମ୍ବା ଗରମ ପାଣି ଦେହରେ ଢ଼ାଳି ଦିଆଗଲା, ଗୃହଦାହ, ଲୁଟ୍‌ତରାଜ ଚାଲିଲା ।

ନାଗପୁର ଭୋନସ୍ଲା ସରକାର ଭୂପ ସିଂହକୁ ଫେରାଇ ନେବାକୁ ଆଦେଶ ଦେଲେ ମଧ ସେ ଗଲେ ନାହିଁ । ନାଗପୁର ସୈନ୍ୟ ପଠାଇଲେ ମଧ ସୋହେଲା ନିକଟସ୍ଥ ସିଂହୋଡା ଘାଟି ଠାରେ ଭୋନ୍‌ସ୍ଲା ସେନାକୁ ପରାସ୍ତ କରି ତଡ଼ି ଦେଲେ । ଫେରିଲା ବେଳକୁ ଗର୍ଭଣା ଗ୍ରାମ ଲୁଣ୍ଠନ କଲେ । ଗର୍ଭଣାର ଚମରା ଗୌନ୍ତିଆ ଏହାର ପ୍ରତିଶୋଧ ନେଇ ପୁନର୍ବାର ଯୁଦ୍ଧରେ ଭୂପ ସିଂହକୁ ହରାଇଲେ ।

ସମ୍ବଲପୁର ଶାସନ କରିବା ପାଇଁ ଭୋନ୍‌ସ୍ଲା ଖ୍ରୀ ୧୮୦୨ରେ ତାନ୍ତିଆ ଫଡନବିସଙ୍କୁ ନିଯୁକ୍ତ କଲେ ଓ ସେ ଖ୍ରୀ ୧୮୦୩ ଶେଷ ପର୍ଯ୍ୟନ୍ତ ସମ୍ବଲପୁର ଶାସନ କରିଥିଲେ । ଖ୍ରୀ

୧୮୦୩ ସେପ୍ଟେମ୍ବର ମାସରେ ଭୋନ୍‌ସ୍ଲା ଓ ଇଂରେଜଙ୍କ ମଧ୍ୟରେ ଦ୍ୱିତୀୟ ମରହଟ୍ଟା ସମର ଆରମ୍ଭ ହୋଇଥିଲା । ଇଂରେଜମାନେ ସେହି ସେପ୍ଟେମ୍ବର ମାସ ୮ ତାରିଖରେ ଓଡ଼ିଶା ଆକ୍ରମଣ ଆରମ୍ଭ କଲେ । ଅକ୍ଟୋବର ୧୪ ତାରିଖରେ ବାରବାଟୀ ଦୁର୍ଗ ଓ ଇଂରେଜ ସେନାପତି ବ୍ରାଉଟନ୍ ଖ୍ରୀ ୧୮୦୪ ଜାନୁୟାରୀ ୨ ତାରିଖ ଦିନ ସମ୍ବଲପୁର ଦୁର୍ଗ ଅଧିକାର କରି ମରହଟ୍ଟା ଶାସନକର୍ତ୍ତା ଫଡନବିସଙ୍କୁ ସେଠାରୁ ତଡ଼ି ଦେଲେ । କିନ୍ତୁ ସେତେବେଳକୁ ଖ୍ରୀ ୧୮୦୩ ଡିସେମ୍ବର ୧୭ ତାରିଖ ଦିନ ଭୋନ୍‌ସ୍ଲା ଓ ଇଂରେଜଙ୍କ ମଧ୍ୟରେ ଦେଓଗାଁ ସନ୍ଧି ସ୍ୱାକ୍ଷରିତ ହୋଇଥିଲା । କିନ୍ତୁ ଏହି ଖବର ଓଡ଼ିଶାର ଇଂରେଜ କର୍ମଚାରୀ ୧୮୦୪ ଜାନୁୟାରୀ ୧୪ ତାରିଖ ପରେ ପାଇଥିଲେ । ସନ୍ଧିରେ ଇଂରେଜମାନେ ଭୋନ୍‌ସ୍ଲାଙ୍କ ଠାରୁ କଟକ (ଆଜ୍ଞ ବା ଆଦେରି) ସୁବା ପାଇଥିଲେ, କିନ୍ତୁ ସମ୍ବଲପୁର ରାଜ୍ୟ ଭୋନ୍‌ସ୍ଲାଙ୍କ ଛତିଶଗଡ (ରତ୍ନପୁର) ସୁବାର ଅନ୍ତର୍ଗତ ବୋଲି ବିବେଚିତ ହେଉଥିଲା । ଇଂରେଜ ସେନାପତି ବ୍ରାଉଟନ୍ ସମ୍ବଲପୁରକୁ ମରହଟ୍ଟାଙ୍କୁ ସମର୍ପି ଦେବାକୁ ପ୍ରସ୍ତୁତ ନଥିଲେ । ତେଣେ ରତ୍ନପୁରର ସୁବାଦାର କେଶବ ଗୋବିନ୍ଦ ସୋନପୁରରେ ସେନାଦଳ ରଖି ସେହି ଅଞ୍ଚଳ ଛାଡୁ ନଥିଲେ । ଇଂରେଜ ସେନାପତି ବ୍ରାଉଟନ୍ ଖ୍ରୀ ୧୮୦୪ ମାର୍ଚ୍ଚ ୨୪ ତାରିଖରେ କଟକ କମିଶନର ଜର୍ଜ ହାରକୋଟଙ୍କ ନିକଟକୁ ପତ୍ର ଲେଖିବା ପରେ ସମ୍ବଲପୁରର ରାଣୀ ରତ୍ନ କୁମାରୀ ଓ ତାଙ୍କର ସାମନ୍ତମାନଙ୍କୁ ଭୋନ୍‌ସ୍ଲାଙ୍କ ଶାସନକୁ ଯିବେ କି ନାହିଁ ବୋଲି ପତ୍ର ଲେଖିଥିଲେ ।*

ଉକ୍ତ ପତ୍ରର ଉତ୍ତରରେ ସମ୍ବଲପୁର ରାଣୀ ରତ୍ନ କୁମାରୀ, ସୋନପୁର ରାଣୀ ଲକ୍ଷ୍ମୀପ୍ରିୟା, ରାୟଗଡ ରାଜା ଜୁଝର ସିଂହ, ସାରଙ୍ଗଗଡ ରାଜା ବିଶ୍ୱନାଥ ସାୟ, ରେଢ଼ାଖୋଲ ରାଜା ବୀର ବୁଢ଼ା ଜେନାମଣି, ଗାଙ୍ଗପୁର ରାଜା ଇନ୍ଦ୍ରଦେବ, ବାମଣ୍ଡା ରାଜା ତ୍ରିଭୂବନ ଦେବ, ବଣେଇ ରାଜା ଇନ୍ଦ୍ର ଦେବ, ଶକ୍ତିର ରାଜା ଦେବାନ ଶିବଦେବ ଓ ବରଗଡ ରାଜା ଠାକୁର ରଣଜିତ୍ ସିଂହ ଜଣାଇ ଦେଲେ ଯେ, ଅତ୍ୟାଚାରୀ ଭୋନ୍‌ସ୍ଲା ରାଜାଙ୍କ ଅଧୀନକୁ ଯିବାକୁ ସେମାନେ ଆଦୌ ଚାହାନ୍ତି ନାହିଁ । ଗଭର୍ଣ୍ଣର ଜେନେରାଲ ଉଏଲେସଲି ଖ୍ରୀ ୧୮୦୪ ନଭେମ୍ବର ୨୩ ତାରିଖରେ ସମ୍ବଲପୁର ତଥା ରେଢ଼ାଖୋଲ ରାଜାମାନଙ୍କୁ ଜଣାଇ ଦେଲେ ଯେ, ସେମାନଙ୍କ ରାଜ୍ୟ ବ୍ରିଟିଶ ରାଜ୍ୟର ଅଙ୍ଗୀଭୂତ ହୋଇ ରହିଲା ।

ଲର୍ଡ ଉଏଲେସଲି ଭାରତ ପରିତ୍ୟାଗ କଲାପରେ ଖ୍ରୀ ୧୮୦୫ରେ ଲର୍ଡ କର୍ଣ୍ଣୱାଲିସ୍ ଭାରତର ଗଭର୍ଣ୍ଣର ଜେନେରାଲ ହେଲେ । ବିଲାତ ସରକାରଙ୍କ ନିର୍ଦ୍ଦେଶରେ ସମ୍ବଲପୁର

* *Selections from the Nagpur Residency Records Vol-I P.57. Letter from George Harcourt, Commissioner of affairs at Cuttack to MS Elephine Stone, Resident at Nagpur dated 24th March 1804.* ସମ୍ବଲପୁର ଇତିହାସ ପୃ ୩୧୪.

ଭୋନ୍‌ସ୍ଲାଙ୍କୁ ଫେରାଇ ଦେବାକୁ ସ୍ଥିର ହେଲା । କର୍ଣ୍ଣୱାଲିସ୍‌ଙ୍କ ମୃତ୍ୟୁ ହେଲା । ଜର୍ଜ ବାର୍ଲୋ ୧୮୦୭ ପର୍ଯ୍ୟନ୍ତ ଅସ୍ଥାୟୀ ଗଭର୍ଣ୍ଣର ଏବଂ ୧୮୦୭ରେ ଲର୍ଡ ମିଣ୍ଟୋ ଗଭର୍ଣ୍ଣର ଜେନେରାଲ ହେଲେ ।

ଇଂରେଜମାନେ ସମ୍ବଲପୁର ଅଠରଗଡକୁ ଦୁଇଟି ଜିଲ୍ଲାରେ ବିଭକ୍ତ କଲେ । ପାଟଣା ଜିଲ୍ଲାରେ ପାଟଣା ଓ ପାଞ୍ଚଗଡ (ଖଡିଆଳ, ବସ୍ତର, ବୋଡାସମ୍ବର, ଫୁଲଝର ଓ ବିନ୍ଦ୍ରା ନୂଆଗଡ) ରହିଲା । ସମ୍ବଲପୁର ଜିଲ୍ଲାରେ ସମ୍ବଲପୁର, ଶକ୍ତି, ରାୟଗଡ, ବରଗଡ, ସାରଙ୍ଗଗଡ, ଗାଙ୍ଗପୁର, ବଣାଇ, ବାମଣ୍ଡା, ରେଢ଼ାଖୋଲ ଓ ସୋନପୁର ରହିଲା । ବୌଦ ଓ ଆଠମଲ୍ଲିକ ଗୋଟିଏ ପୃଥକ ବୌଦ ଜିଲ୍ଲା ରୂପେ ଗଠିତ ହୋଇଥିଲା । ଖ୍ରୀ ୧୮୦୪ରେ ବୌଦ ଓ ଆଠମଲ୍ଲିକ ଏକ ରାଜ୍ୟ ଥିଲା ।• ଏହି ସମୟରେ ସମ୍ବଲପୁରର ସାମନ୍ତ ରାଜ୍ୟମାନଙ୍କର ଅଭ୍ୟନ୍ତରୀଣ ଶାସନ ସେହି ସାମନ୍ତ ରାଜାମାନଙ୍କ ହାତରେ ରହିଲା । ସେହିପରି ରେଢ଼ାଖୋଲ ରାଜା ତାଙ୍କ ରାଜ୍ୟ ଶାସନ କଲେ । ଦେଶ ରକ୍ଷା ଓ ସାମରିକ ଶାସନ ଇଂରେଜମାନଙ୍କ ହାତରେ ରହିଲା ।

ଚନ୍ଦ୍ରଶେଖର ଜେନାମଣି :- (ଖ୍ରୀ ୧୮୧୦-୧୮୨୫)

ରାଜା ବୀର ବୁଢ଼ା ଜେନାମଣିଙ୍କ ସମୟରେ ଖୋଲଗଡରୁ ରେଢ଼ାଖୋଲ ନିକଟସ୍ଥ ମହାନଦୀର ଉପନଦୀ କେରାଣ୍ଡି ଯୋର ନଦୀର ଦକ୍ଷିଣ କୂଳରେ ପୁରୁଣା ଗଡ ନାମକ ସ୍ଥାନରେ ଅସ୍ଥାୟୀ ଗଡ ନିର୍ମିତ ହୋଇଥିଲା ।

ବୀର ବୁଢ଼ା ଜେନାମଣିଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଚନ୍ଦ୍ରଶେଖର ଜେନାମଣି ରାଜା ହେଲେ । ସେ ତାଙ୍କର ରାଜଧାନୀ ବର୍ତ୍ତମାନର ରେଢ଼ାଖୋଲକୁ ସ୍ଥାନାନ୍ତରିତ କଲେ । ବର୍ତ୍ତମାନର ଗଡ ଓ ସେହି ସମୟରେ ନିର୍ମିତ ରେଢ଼ାଖୋଲର ଚନ୍ଦ୍ରଶେଖର ଶିବ ମନ୍ଦିର ରାଜା ଚନ୍ଦ୍ରଶେଖରଙ୍କ କୀର୍ତ୍ତି । ଚନ୍ଦ୍ର ଶେଖର ଜେନାମଣି ରାମପୁର ଦୁର୍ଗ ନିର୍ମାଣ କରିଥିଲେ । ଏହି ଦୁର୍ଗ ଏକ ମାଟିଘର । ତାର ଚତୁଃପାର୍ଶ୍ୱରେ ବାଉଁଶଗଛ ଲଗାଇ ଥିଲେ ।

ବିଷ୍ଣୁ ଚନ୍ଦ୍ର ଜେନାମଣି :- (ଖ୍ରୀ ୧୮୨୫-୧୯୦୨)

ଚନ୍ଦ୍ରଶେଖରଙ୍କ ପରେ କଦମ୍ବ ବଂଶର ଚତୁର୍ଦ୍ଦଶ ରାଜା ରୂପେ ତାଙ୍କ ନାବାଳକ ପୁତ୍ର ବିଷ୍ଣୁ ଚନ୍ଦ୍ର ଜେନାମଣି ଖ୍ରୀ ୧୮୨୫ରେ ସିଂହାସନ ଆରୋହଣ କଲେ । ସେ ଖ୍ରୀ ୧୮୬୪ରେ ବର୍ତ୍ତମାନର ରାଜପ୍ରାସାଦ ନିର୍ମାଣ କରିଥିଲେ । ଏହା ଅଦ୍ୟାବଧି ବିଦ୍ୟମାନ ।

ଇଂରେଜମାନେ ଖ୍ରୀ ୧୮୦୬ର ଚୁକ୍ତି ଅନୁସାରେ ରାୟଗଡ ଓ ଶକ୍ତି ଛଡା ସମସ୍ତ ସମ୍ବଲପୁର ରାଜ୍ୟ ଭୋନ୍‌ସ୍ଲାଙ୍କୁ ଫେରାଇ ଦେଲେ । କିନ୍ତୁ ରାୟଗଡର ଯୁଝର ସିଂହ,

---

• *ଉତ୍କଳ ଇତିହାସ - ୰ ପଣ୍ଡିତ କୃପାସିନ୍ଧୁ ମିଶ୍ର ।*

ବୋଡା ସମ୍ବଲର ରାଜା ଭଗତ ବରିହା ପ୍ରଭୃତି କେତେକ ସାମନ୍ତ ରାଜା ବାଧା ଦେବାରୁ ଭୋନ୍‌ସ୍ଲା ଖ୍ରୀ ୧୮୦୮ ପର୍ଯ୍ୟନ୍ତ ଦଖଲ ନେଇ ପାରି ନଥିଲେ । ଶେଷରେ ମରହଟ୍ଟାମାନେ ରାତ୍ରରେ ଭେଳା ସାହାଯ୍ୟରେ ମହାନଦୀ ପାର ହୋଇ ସମ୍ବଲପୁର ଦୁର୍ଗ ଅଧିକାର କଲେ ଓ ରାଣୀ ଛୋଟନାଗପୁରରେ ଇଂରେଜ ଶିବିରରେ ଆଶ୍ରୟ ନେଲେ । ସମ୍ବଲପୁର ଓ ପାଟଣା ମରହଟ୍ଟାମାନେ ଫେରି ପାଇଲେ ମଧ୍ୟ ବୌଦ ଓ ଆଠ ମଲ୍ଲିକ ଅଞ୍ଚଳ ଫେରି ପାଇ ନଥିଲେ ।

ତୃତୀୟ ମରହଟ୍ଟା ସମର (ଖ୍ରୀ ୧୮୧୭-୧୮୨୪)ରେ ଭୋନ୍‌ସ୍ଲା ଅପ୍ପା ସାହେବ ପରାସ୍ତ ହେଲେ । ଖ୍ରୀ ୧୮୧୭ରେ ଇଂରେଜମାନେ ଚିରକାଳ ପାଇଁ ସମ୍ବଲପୁର ଓ ପାଟଣା ଏବଂ ତତ୍ ସଂପୃକ୍ତ ସାମନ୍ତ ରାଜ୍ୟ ରେଢ଼ାଖୋଲ ମଧ୍ୟ ଅଧିକାର କଲେ । ଇଂରେଜ ସେନାପତି ରଫସିଜ୍ଜ ଖ୍ରୀ ୧୮୧୭ରେ ଜୟନ୍ତ ସିଂହ ଓ ତାଙ୍କ ପୁତ୍ର ମହାରାଜା ସାୟଙ୍କୁ ଭୋନ୍‌ସ୍ଲାଙ୍କ କାରାଗାରରୁ ମୁକ୍ତ କରି ଜୟନ୍ତଙ୍କୁ ସମ୍ବଲପୁର ଗାଦିରେ ପୁନଃ ପ୍ରତିଷ୍ଠିତ କଲେ । କିନ୍ତୁ କୌଣସି ଗଡଜାତ ଉପରେ ତାଙ୍କୁ କିଛି କ୍ଷମତା ଦିଆଗଲା ନାହିଁ । ଜୟନ୍ତଙ୍କ ଖ୍ରୀ ୧୮୧୮ରେ ମୃତ୍ୟୁ ହେବାରୁ ଏବଂ ପୁତ୍ର ମହାରାଜା ସାୟ ନାବାଳକ ଥିବାରୁ ଖ୍ରୀ ୧୮୨୦ ପର୍ଯ୍ୟନ୍ତ ରଫସିଜ ନିଜେ ଶାସନ ଚଳାଇଲେ ଏବଂ ତା'ପରେ ଗାଦି ପୁନଃ ଅର୍ପଣ କଲେ ।

ମେଜର ରଫସିଜ ସମ୍ବଲପୁରର ପଲିଟିକାଲ ଏଜେଣ୍ଟ ରହିଲେ କିନ୍ତୁ ସମ୍ବଲପୁରର ଅଠର ଗଡଜାତ ଆଉ ରହିଲା ନାହିଁ । ସରଗୁଜା ଓ ସିଂହଭୂମି ବିହାର ପ୍ରଦେଶର ରାଞ୍ଚି ଡିଭିଜନର ଅନ୍ତର୍ଭୁକ୍ତ କରାଗଲା । ଖ୍ରୀ ୧୮୦୦ରୁ ବୌଦ ଓ ଆଠ ମଲ୍ଲିକ କଟକ ଡିଭିଜନର ଅନ୍ତର୍ଭୁକ୍ତ ହୋଇଥିଲା । ରାୟଗଡ ଖ୍ରୀ ୧୮୦୬ରେ ବିହାରରେ ଓ ପରେ ନାଗପୁରରେ ସଂଯୁକ୍ତ ହେଲା । ଖ୍ରୀ ୧୮୧୭ରେ ବସ୍ତରକୁ ରାୟପୁର ଡିଭିଜନରେ ଅନ୍ତର୍ଭୁକ୍ତ କରାଗଲା । ଅବଶିଷ୍ଟ ଗଡଜାତ ସମ୍ବଲପୁରର ଇଂରେଜ ଏଜେଣ୍ଟଙ୍କ ଦ୍ୱାରା ଶାସିତ ହେଲେ । ଖ୍ରୀ ୧୮୨୧ରେ ଗଡଜାତମାନଙ୍କୁ ଇଂରେଜ ସରକାର ପୃଥକ୍ ସନନ୍ଦ ଦେଇ ରାଜସ୍ୱ ଓ ସେନା ବିଭାଗ ତାଙ୍କ ହାତରେ ରଖିଲେ । ମହାରାଜା କେବଳ ଦେବାନି ଓ ଫୌଜଦାରୀ ମକଦମା ବୁଝିଲେ । ଏହି ବ୍ୟବସ୍ଥା ରେଢ଼ାଖୋଲ ରାଜା ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କ ପର୍ଯ୍ୟନ୍ତ ଚାଲି ଆସିଥିଲା । ରେଢ଼ାଖୋଲ ରାଜା ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କ ସିଂହାସନାରୋହଣର ଦୁଇ ବର୍ଷ ପରେ ମହାରାଜା ସାୟ ଅପୁତ୍ରିକ ଅବସ୍ଥାରେ ମୃତ୍ୟୁବରଣ କଲେ ମଧ୍ୟ ବ୍ରିଟିଶ ପଲିଟିକାଲ ଏଜେଣ୍ଟ ତାଙ୍କ ମୃତ୍ୟୁ ସମ୍ବାଦ ଗୋପନ ରଖି ତାଙ୍କର ବାମଣ୍ଡା ରାଜ ବଂଶୀୟା ରାଣୀ ମୋହନ କୁମାରୀଙ୍କୁ ରାଜ୍ୟ ଦାୟିତ୍ୱ ଦେଇଥିଲେ । ଏହି ବ୍ୟବସ୍ଥା ଖ୍ରୀ ୧୮୩୩ ପର୍ଯ୍ୟନ୍ତ ଚାଲିଥିଲା ।

ସମ୍ବଲପୁରର ଚତୁର୍ଥ ରାଜା ମଧୁକରଙ୍କର ବଂଶଧର ସୁରେନ୍ଦ୍ର ସାୟ ଓ ଉଦନ୍ତ ସାଏ ମହାରାଜାଙ୍କ ମୃତ୍ୟୁ ସମ୍ବାଦ ପାଇ ସିଂହାସନ ପାଇଁ ବିଦ୍ରୋହ କଲେ । ସେମାନଙ୍କ ଦାବିକୁ ଅନେକ ସାମନ୍ତ ରାଜା ଓ ଜମିଦାରମାନେ ବିପୁଳ ସମର୍ଥନ ଦେଇ ସେମାନଙ୍କ ପକ୍ଷରେ ଯୋଗ ଦେଲେ ।

ଇଂରେଜ ସରକାର ଖ୍ରୀ ୧୮୩୩ରେ ରାଣୀ ମୋହନ କୁମାରୀଙ୍କୁ ପେନ୍‌ସନ୍ ଦେଇ କଟକକୁ ପଠାଇ ଦେଲେ । ରାଣୀଙ୍କ ଇଚ୍ଛା ଆନୁସାରେ ଚୌହାନ ବଂଶର ବରପାଲି ଜମିଦାରଙ୍କ ରକ୍ଷିତାଙ୍କ ପୁତ୍ର ନାରାୟଣ ସିଂହଙ୍କୁ ସମ୍ବଲପୁରର ରାଜା କଲେ । ଏଥିରେ ସୁରେନ୍ଦ୍ର ତାଙ୍କ ଛଅ ଭାଇ ଉଦନ୍ତ, ଧ୍ରୁବ, ଉଜ୍ୱଳ, ଛବିଳ, ଜଜଳ ଓ ମେଦିନିଙ୍କ ସହ ଏହା ବିରୁଦ୍ଧରେ ବିପ୍ଲବ କଲେ । ସୁରେନ୍ଦ୍ର ସାଏ ଦେବ୍ରିଗଡ ଦୁର୍ଗରେ ଥିବାବେଳେ ରାଜା ନାରାୟଣ ସିଂହଙ୍କ ସିପାହୀମାନେ ଦୁର୍ଗ ଆକ୍ରମଣ କରି ଲକ୍ଷ୍ମଣପୁରର ଗଣ୍ଡ ଜମିଦାର ବଳଭଦ୍ର ଦେବଙ୍କୁ ମାରି ପକାଇଲେ । ସୁରେନ୍ଦ୍ର ସାଏ ଖସି ପଳାଇ ଗଲେ । ସୁରେନ୍ଦ୍ର ସାଏ ରାଜା ନାରାୟଣ ସିଂହଙ୍କର ଏକମାତ୍ର ବିଶ୍ୱସ୍ତ ଝାରସୁଗୁଡା ନିକଟସ୍ଥ ରାମପୁରର ଜମିଦାର ଦୁର୍ଜ୍ଜୟ ସିଂହକୁ ଆକ୍ରମଣ କଲେ । ଦୁର୍ଜ୍ଜୟ ହେମଗିରିକୁ ଖସି ପଳାଇଲେ । ଇଂରେଜ ସରକାର ସୁରେନ୍ଦ୍ରଙ୍କ ସହ ତାଙ୍କର କକା ବଳରାମ ଓ ଭାଇ ଉଦନ୍ତକୁ ବନ୍ଦୀ କରି ହଜାରୀ ବାଗ ଜେଲ୍‌କୁ ପଠାଇ ଦେଲେ ଓ ସେଠାରେ ବଳରାମଙ୍କ ମୃତ୍ୟୁ ହେଲା ।

ଅପୁତ୍ରିକ ମହାରାଜା ନାରାୟଣ ସିଂହଙ୍କ ମୃତ୍ୟୁ ଖ୍ରୀ ୧୮୪୯ରେ ହେଲା । ଲର୍ଡ ଡେଲହାଉସୀଙ୍କ ରାଜ୍ୟ ସ୍ୱତ୍ୱଲୋପ ନୀତି ଅନୁସାରେ ସମ୍ବଲପୁରର ଶାସନଭାର ଇଂରେଜମାନେ ପ୍ରତ୍ୟକ୍ଷ ଭାବେ ନିଜ ହାତକୁ ନେଲେ ।◆

ରେଢ଼ାଖୋଲ ରାଜା ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କ ସମୟରେ ରେଢ଼ାଖୋଲର ଏକ ଗୁପ୍ତଚର ବାମଣ୍ଡାର ରାଜା ସର୍ବେଶ୍ୱର ଦେବଙ୍କୁ ହତ୍ୟା କଲା । ସର୍ବେଶ୍ୱରଙ୍କ ପରେ ଅର୍ଜ୍ଜୁନ ଦେବ ବାମଣ୍ଡାର ଶାସନ କର୍ତ୍ତା ହେଲେ । ସେ ଖ୍ରୀ ୧୮୪୯ରେ ସ୍ୱାଧୀନ ହେବାକୁ ଚେଷ୍ଟା କରୁଥିବା ଅନୁଗୋଳର ରାଜାଙ୍କୁ ବନ୍ଦୀ କରିବାରେ ସାହାଯ୍ୟ କରିଥିଲେ । ଅନୁଗୋଳ ରାଜା ସୋମନାଥ ସିଂହ (୧୮୧୪-୧୮୪୯) ଙ୍କୁ ରାୟ ରୂପସିଂହ ମଧ ବନ୍ଦୀ କରିବାକୁ ବିଶେଷ ସହାୟତା କରିଥିଲେ । ରାୟ ରୂପ ସିଂହ ପଦ୍ମପୁର ଜମିଦାର ବଂଶୀୟ ଥିଲେ । ସେ ସମ୍ବଲପୁରର ଇଂରେଜ ଏଜେଣ୍ଟଙ୍କ ଅଫିସରେ କିରାଣୀ ଥିଲେ । ସୋମନାଥ ସିଂହ ଖୁବ୍ ଶକ୍ତିଶାଳୀ, ଚତୁର, ଗର୍ବୀ ଏବଂ ଏକ ବାଗିଆ ରାଜାଥିଲେ । ସେ ଢ଼େଙ୍କାନାଳ, ଦଶପଲ୍ଲା, ବଉଦ, ଆଠମଲ୍ଲିକ (ହଣ୍ଡପା) ବାମଣ୍ଡା, ରେଢ଼ାଖୋଲ ଓ ହିନ୍ଦୋଳର ରାଜାମାନଙ୍କୁ ଖାତର କରୁ ନଥିଲେ । କବିଚନ୍ଦ୍ର ନୃସିଂହ ରାୟଗୁରୁଙ୍କ ଲିଖିତ "ବୁଢ଼ା ପଙ୍କ ଯୁଦ୍ଧ" ପୋଥିର ୭ମ ଛାନ୍ଦର ଉଦ୍ଧୃତି ତଳେ ଦିଆଗଲା ।

---

◆ *ଉତ୍କଳ ଇତିହାସ - ପଣ୍ଡିତ କୃପାସିନ୍ଧୁ ମିଶ୍ର ।*

''ଏକ ଚକ୍ର ହୋଇଲେ ସୋମନାଥ,
ସବୁ ଆଡେ ଖୋଜିଲେ ଯୁଦ୍ଧ ପଥ ।
ଢ଼େଙ୍କାନାଳ, ଦଶପଲ୍ଲା, ବଉଦ,
ରେଢ଼ାଖୋଲ ହଣ୍ଡପା ରାଜ୍ୟେବାଦ ।
ପୁଣି ବାମଣ୍ଡାକୁ ଶଙ୍କା ଦିଆଇ,
ରାଜାମାନଙ୍କ ଭାଙ୍ଗିଲେ ବଡାଇ ।
କାହିଁ ହିନ୍ଦୋଳ ଘୁମୁସର ଖଣ୍ଡ,
ଚାରିଆଡେ କଲେ ଆଜ୍ଞା ପ୍ରଚଣ୍ଡ ।''

ବୁଢ଼ା ପଙ୍କ ଯୁଦ୍ଧ (ଖ୍ରୀ ୧୮୨୫) ପରେ ମଧ ରେଢ଼ାଖୋଲ ରାଜା ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କ ସଙ୍ଗେ ସୋମନାଥ ସିଂହ ଜଗଦେବଙ୍କର ବିବାଦ ଲାଗି ରହିଥିଲା ।

କେଡନହେଡ ସାହେବ ସମ୍ବଲପୁରର ପ୍ରଥମ ଆସିଷ୍ଟାଣ୍ଟ ଏଜେଣ୍ଟ ବା ପ୍ରଧାନ ସହାକାରୀ ଥିଲେ । ସେ ରାଞ୍ଚିରେ ଥିବା 'ଦକ୍ଷିଣ ପଶ୍ଚିମ ସୀମାନ୍ତ' ପ୍ରଦେଶର ଏଜେଣ୍ଟଙ୍କର ଅଧସ୍ତନ ଥିଲେ । ଏହି ଏଜେଣ୍ଟଙ୍କ ଉପାଧି ପରିବର୍ତ୍ତିତ ହୋଇ ଖ୍ରୀ ୧୮୫୪ ରେ ''ଛୋଟ ନାଗପୁର କମିଶନର'' ହେଲା ଏବଂ ସମ୍ବଲପୁରର ଶାସନ କର୍ତ୍ତା ସିନିୟର ଆସିଷ୍ଟାଣ୍ଟ କମିଶନର ହେଲେ ।

କେଡନହେଡ୍‌ଙ୍କ ପରେ ଖ୍ରୀ ୧୮୫୨ରେ କମର୍ଲି ସାହେବ, ୧୮୫୩ରେ ବର୍ଟ ସାହେବ, ୧୮୫୬ରେ ଓଲେଇ ସାହେବ ସମ୍ବଲପୁରର ଏଜେଣ୍ଟ ହୋଇଥିଲେ । ସିନିୟର ଆସିଷ୍ଟାଣ୍ଟ କମିଶନର ଓଲେଇ ସାହେବଙ୍କ ସମୟରେ ସିପାହୀ ବିଦ୍ରୋହ ହୋଇଥିଲା । ହଜାରୀ ବାଗ ଜେଲ୍‌ଖାନା ଭାଙ୍ଗି ବନ୍ଦୀମାନଙ୍କୁ ଛାଡି ଦେବାରୁ ସୁରେନ୍ଦ୍ର ସାୟ ଜେଲ୍‌ଖାନାରୁ ପଳାଇ ଆସିଲେ । ଏହି ଆନ୍ଦୋଳନ ଦମନ କରିବାକୁ ଖ୍ରୀ ୧୮୫୭ରେ ସମ୍ବଲପୁର କଟକ କମିଶନରଙ୍କ ଅନ୍ତର୍ଭୁକ୍ତ ହେଲା ।

ଖ୍ରୀ ୧୮୬୦ରେ ସମ୍ବଲପୁର ଓଡ଼ିଶାକୁ ପରିବର୍ତ୍ତିତ ହୋଇ ବଙ୍ଗ ପ୍ରଦେଶର ଅନ୍ତର୍ଗତ ହେଲା । ଖ୍ରୀ ୧୮୬୨ରେ ପୁଣି ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ମଧ ପ୍ରଦେଶରେ ମିଶିଲା । ଏହି ବ୍ୟବସ୍ଥା ଖ୍ରୀ ୧୯୦୫ ପର୍ଯ୍ୟନ୍ତ ରହିଲା । ଖ୍ରୀ ୧୯୦୫ରେ ସାରଙ୍ଗ ଗଡ, ଫୁଲଝର, ଖଡିଆଳ, ପଦ୍ମପୁର, ଚନ୍ଦ୍ରପୁର ପ୍ରଭୃତି ବାଦଦିଆଯାଇ ସମ୍ବଲପୁରକୁ ଓଡ଼ିଶା ସହିତ ସଂଯୁକ୍ତ କରାଗଲା କିନ୍ତୁ ଓଡ଼ିଶା ବଙ୍ଗ ପ୍ରଦେଶର ଅନ୍ତର୍ଗତ ଥିଲା । ଖ୍ରୀ ୧୯୧୧ରେ ଖଡ଼ିଆଳ, ପଦ୍ମପୁର ମଧପ୍ରଦେଶରୁ ଆସି ଓଡ଼ିଶା ସହିତ ମିଶିଲା ଏବଂ ଓଡ଼ିଶା ବଙ୍ଗ ପ୍ରଦେଶରୁ ପୃଥକ ହୋଇ ସ୍ୱତନ୍ତ୍ର 'ବିହାର-ଓଡ଼ିଶା' ପ୍ରଦେଶ ଗଠିତ ହେଲା ଏବଂ ଏହି ପ୍ରଦେଶର ରାଜଧାନୀ ପାଟନା ଠାରେ ସ୍ଥାପିତ ହୋଇଥିଲା ।

ରେଢ଼ାଖୋଲ ରାଜା ବିଷ୍ଣୁ ଚନ୍ଦ୍ର ଢେକାମଣି ସୁରେନ୍ଦ୍ର ସାୟଙ୍କୁ ସକ୍ରିୟ ସାହାଯ୍ୟ କରି ନଥିଲେ ମଧ୍ୟ ରେଢ଼ାଖୋଲ, ବାମଣ୍ଡା, ଅନୁଗୋଳ, ପାଟଣା, ଖଡ଼ିଆଳ ପ୍ରଭୃତି ସମ୍ବଲପୁର ଚତୁର୍ଦ୍ଦିଗବର୍ତ୍ତୀ ଅଞ୍ଚଳମାନଙ୍କରେ ବିପ୍ଳବ ଦେଖାଦେଇଥିଲା । ଲୋକମାନେ ସୁରେନ୍ଦ୍ର ସାଏଙ୍କୁ ସମର୍ଥନ କରୁଥିଲେ । ସୁରେନ୍ଦ୍ର ସାଏ ବାର ପାହାଡର ଡେବିରି ଗଡ ଦୁର୍ଗ ଓ ବାରବଖରା ଗୁମ୍ଫାକୁ ପ୍ରଧାନ ଆଶ୍ରୟର କେନ୍ଦ୍ରସ୍ଥଳ କରିଥିଲେ । ସମ୍ବଲପୁର ମଧ୍ୟକୁ କୌଣସି ଦିଗରୁ ଇଂରେଜମାନେ ଯେପରି ସୈନ୍ୟଆଣି ନପାରିବେ, ସେଥିପାଇଁ (୧) ରେଢ଼ାଖୋଲ-ସମ୍ବଲପୁର ସଦରର ବଡ଼ପାଟି ପାହାଡ ଶ୍ରେଣୀ, କଟକ ସମ୍ବଲପୁର ରାସ୍ତାର ଯୁଯୁମୁରା ଓ ମୁଣ୍ଡେର ମଧ୍ୟରେ ଲୋଇସିଂହା ଅଞ୍ଚଳରେ ଅବସ୍ଥିତ ପାହାଡିଆ ରାସ୍ତା, (୨) ସମ୍ବଲପୁର ସଦର ଉତ୍ତରକୁ ୩୨ କି.ମି. ଦୂର ସମ୍ବଲପୁର-ରାଞ୍ଚି ରାସ୍ତାର ଝରଘାଟି, ରେଙ୍ଗାଲି ଷ୍ଟେସନ ନିକଟସ୍ଥ ମଉଳା ଭଣଜା ପାହାଡିଆ ରାସ୍ତା, (୩) ପଦ୍ମପୁର ସବ୍ ଡିଭିଜନର ସୋହେଲା ନିକଟସ୍ଥ ସମ୍ବଲପୁର - ରାୟପୁର ରାସ୍ତାର ସିଂହୋଡାଘାଟି ଏହି ତିନୋଟିରେ କୃତ୍ରିମ ଦୁର୍ଗ ନିର୍ମାଣ କରି ସମ୍ବଲପୁରଠାରେ ରହୁଥିବା ଇଂରେଜମାନଙ୍କୁ ବାହାରର ସାହାଯ୍ୟରୁ ବିଚ୍ଛିନ୍ନ କରିଦେଇଥିଲେ ।

ସମ୍ବଲପୁରଠାରେ ଇଂରେଜ ସୈନ୍ୟମାନେ ଅସ୍ୱାସ୍ଥ୍ୟକର ଜଙ୍ଗଲ ଅଞ୍ଚଳରେ ଯୁଦ୍ଧକରି ରୁଗ୍ଣ ହୋଇ ପଡ଼ିଥିଲେ । କଟକର କମିଶନର ଜି.ଏଫ୍ କକ୍‌ବର୍ଣ୍ଣ ଏମାନଙ୍କର ଅବସ୍ଥା ହୃଦୟଙ୍ଗମ କରି ମାଡ୍ରାସ ଆର୍ମୀ ଡାକ୍ତର ମୁର ଓ ଡାଃ ହେନସନ୍‌କୁ ପଠାଇଲେ । ସେମାନଙ୍କୁ ଅନୁଗୋଳଦେଇ ରେଢ଼ାଖୋଲର ସଦର ରାମପୁର (ବର୍ତ୍ତମାନର ରେଢ଼ାଖୋଲ)ରେ ପହଞ୍ଚିବାକୁ ପଡ଼ିଲା । ରେଢ଼ାଖୋଲରୁ ସମ୍ବଲପୁର ୬୫ କି.ମି. ରାସ୍ତା ଯିବା ପାଇଁ ସାହାସ କରି ପାରିଲେ ନାହିଁ; ତେଣୁ ସେମାନଙ୍କୁ ସୈନ୍ୟ ପଠାଇବା ପାଇଁ ଖବର ପଠାଇ ଲେ, କିନ୍ତୁ ସମ୍ବଲପୁରଠାରେ ଥିବା କପ୍ତାନ ଲେଙ୍କ ନିକଟରେ କୌଣସି ସାହାଯ୍ୟ ବା ସମ୍ବାଦ ମିଳିଲା ନାହିଁ । ବିଳମ୍ବ ହେବାରୁ ସେମାନେ ବିପ୍ଳବର ମାତ୍ରା ଅଧିକ ଭୀଷଣ ହୋଇଥିବା ବୁଝିଲେ । ଏବଂ ବିଳମ୍ବ କଲେ ଚିକିତ୍ସାରେ ବାଧା ଉପୁଜିବ ଭାବି ଅଧୈର୍ଯ୍ୟ ହୋଇ ଗଲେ । କାଳ ବିଳମ୍ବ ନକରି ୧୬ ଜଣ ବୋଝିଆଙ୍କ ସଙ୍ଗେ ସମ୍ବଲପୁର ଅଭିମୁଖେ ଯାତ୍ରା କଲେ ।

ଡାଃ ମୁର ଓ ଡାଃ ହେନସନ ରେଢ଼ାଖୋଲଠାରୁ ଯୁଯୁମୁରା ଯିବା ପରେ ଲୋଇସିଂହାର ବଡପାଟି ଘାଟି ନିକଟରେ• ସୁରେନ୍ଦ୍ର ସାୟଙ୍କ ଦଳର ବିଶେଷତଃ ଲୋଇସିଂହା ଜମିଦାର ବଂଶର (ରେଢ଼ାଖୋଲର) ମଧୁ ଗୌନ୍ତିଆଙ୍କ ନେତୃତ୍ୱରେ ପରିଚାଳିତ

---

*• ଏହା ପୁରାତନ ରାସ୍ତା ଯୁଯୁମୁରା ଠାରୁ ଲୋଇସିଂହା ମଧ୍ୟରେ ଭାୟା ଧମାଦେଇ ସମ୍ବଲପୁର ଯାଉଛି । କିନ୍ତୁ ବର୍ତ୍ତମାନର ଜାତୀୟ ରାଜପଥ ଯୁଯୁମୁରାରୁ ମୁଣ୍ଡେରଦେଇ ସିଧା ଯାଉଛି ।*

ବିପ୍ଳବୀମାନେ ସେମାନଙ୍କୁ ଘେରିଗଲେ । ମଧୁ ଗୌଚିଆଙ୍କ ଫାରସାଚୋଟରେ ଡା ମୁରଙ୍କ ମୃତ୍ୟୁ ହେଲା । ଡଃ ହେନସନ କୌଣସି ମତେ ଖସି ଯାଇ ଜଙ୍ଗଲ ଭିତରେ ଲୁଚି ପ୍ରାଣ ରକ୍ଷା କଲେ । କିନ୍ତୁ ସେ ଖାଦ୍ୟବିନା ଭୋକରେ ଦରମରା ଅବସ୍ଥାରେ ପଡି ରହିଲେ । ଦୁଇଦିନ ପରେ ଦଳେ ସୈନ୍ୟ ସମ୍ବଲପୁରରୁ ବାହାରି ଡଃ ହେନସନଙ୍କୁ ଜଙ୍ଗଲ ମଧ୍ୟରୁ ଉଦ୍ଧାର କରି ରେଢ଼ାଖୋଲରେ ପହଞ୍ଚିଲେ ।

କାପ୍ତାନ ଲେ ସମ୍ବଲପୁରଠାରେ ଏହି ଖବର ପାଇ ପଚାଶ ଜଣ ମାନ୍ଦ୍ରାଜୀ ସୈନ୍ୟ ଧରି ରେଢ଼ାଖୋଲ ଅଭିମୁଖେ ବାହାରିଲେ । ବାଟରେ ବିପ୍ଳବୀମାନେ ସେମାନଙ୍କୁ ଆକ୍ରମଣ କଲେ ସୁଦ୍ଧା କିଛି କ୍ଷତି କରି ପାରିଲେ ନାହିଁ । ଲେ ଙ୍କର ବହୁତ ସୈନ୍ୟ ସେଠାରେ ଟଳି ପଡ଼ିଲେ । ଲେ କୌଣସି ପ୍ରକାରେ ଅଳ୍ପ ସୈନ୍ୟଙ୍କୁ ନେଇ ରେଢ଼ାଖୋଲରେ ପହଞ୍ଚିଲେ । ଲେ ସେଠାରୁ ଅଧିକ ସୈନ୍ୟ ନେଇ ଡଃ ହେନସନଙ୍କୁ ସମ୍ବଲପୁରରେ ପହଞ୍ଚାଇଲେ ।

ରେଢ଼ାଖୋଲ ରାଜା ବିଷ୍ଣୁଚନ୍ଦ୍ର ଜେନାମଣି ଇଂରେଜମାନଙ୍କର ସହାୟତା କରିଥିଲେ । ଅନୁଗୋଳ ଇଂରେଜମାନଙ୍କର ଏକ ସାମରିକ ଘାଟି ହୋଇଥିଲା । କଟକ-ସମ୍ବଲପୁର ପ୍ରଧାନ ସଡ଼କ ଉପରେ ଅନୁଗୋଳ ଓ ରେଢ଼ାଖୋଲ ଅବସ୍ଥିତ ଥିବାରୁ ରେଢ଼ାଖୋଲ ରାଜା ବିପ୍ଳବରେ ଭାଗନେବା ପାଇଁ ସାହସ କରୁ ନଥିଲେ । ରେଢ଼ାଖୋଲ ରାଜ୍ୟର ମଧୁ ଗୌତିଆ ଡଃ  ମୁରଙ୍କ ହତ୍ୟାରେ ଜଡ଼ିତ ଥିବାରୁ ଇଂରେଜ ସରକାରଙ୍କ ତରଫରୁ ରାଜା ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କୁ କଡା ତାଗିଦ କରାଯାଇଥିଲା । ରାଜା ବାଧ୍ୟହୋଇ ମଧୁ ଗୌନ୍ତିଆ ଓ ତାଙ୍କର ତିନିଜଣ ପ୍ରଧାନ ପୃଷ୍ଠପୋଷକଙ୍କୁ ଇଂରେଜଙ୍କ ହାତରେ ସମର୍ପଣ କଲେ । ଇଂରେଜ ସରକାର ମଧୁ ଗୌଚିଆଙ୍କୁ ଫାଶି ଦେଲେ । ଶାନ୍ତି ଫେରି ଆସିବା ପରେ ମଧୁ ଗୌନ୍ତିଆଙ୍କ ଭାଇଙ୍କୁ ଲୋଇସିଂହ ଜମିଦାରୀ ଫେରାଇ ଦେଲେ ।

ଲୋଇସିଂହ ଜମିଦାରୀ ପୂର୍ବେ ରେଢ଼ାଖୋଲ ରାଜ୍ୟରେ ଥିଲା । କିନ୍ତୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ଏହା ସମ୍ବଲପୁର ସଦର ସବ୍‌ଡିଭିଜନରେ ରହିଛି । ଏହି ଜମିଦାରୀ ଯୁଯୁମୁରା ଅଞ୍ଚଳ ସମେତ ୨୪୬ ବର୍ଗ କିଲୋମିଟର ଅଞ୍ଚଳକୁ ନେଇ ଗଠିତ । ଏହା ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଗଠିତ ହୋଇଥିଲା । ବର୍ତ୍ତମାନ ଜମିଦାରଙ୍କର ବଂଶଧର ଯୁଯୁମୁରା ଏବଂ ଲୁଇ ସିଂହ ଗଡରେ ରହୁଛନ୍ତି । ବର୍ତ୍ତମାନ ଯୁଯୁମୁରାଠାରୁ ଲୁଇ ସିଂହ ମଧ ଦେଇ ଧମା ପର୍ଯ୍ୟନ୍ତ ଏକ ରାସ୍ତା ଦୁର୍ଗମ ଜଙ୍ଗଲ ଓ ଗିରିପଥ ମଧ୍ୟରେ ଯାଇଅଛି ।

ରାଜା ବିଷ୍ଣୁଚନ୍ଦ୍ର ଜେନାମଣି ଖ୍ରୀ ୧୮୫୭ର ସିପାହୀ ବିଦ୍ରୋହ ଓ ସୁରେନ୍ଦ୍ର ସାଏଙ୍କର ବିପ୍ଳବ ସମୟରେ ଇଂରେଜ ସରକାରଙ୍କ ପାଇଁ ଆଖି ଦୃଶିଆ କାମ କରିଥିଲେ । ତେଣୁ ତାଙ୍କୁ ଖ୍ରୀ ୧୮୬୬ ରେ ଇଂରେଜ ସରକାରଙ୍କ ତରଫରୁ ଏକ ସନନ୍ଦ ପତ୍ର ମିଳିଥିଲା । ବ୍ରିଟିଶ ସରକାର ରେଢ଼ାଖୋଲ ରାଜ୍ୟକୁ ଖ୍ରୀ ୧୮୬୭ରେ ସ୍ୱତନ୍ତ୍ର ସାମନ୍ତ ରାଜ୍ୟ ରୂପେ ସ୍ୱୀକୃତି ଦେଇଥିଲେ । ଏଥିପାଇଁ ରାଜାଙ୍କୁ ସନନ୍ଦ ମଞ୍ଜୁରୀ ହୋଇଥିଲା ।

ରାଜା ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କ ରାଜତ୍ୱ କାଳରେ ତାଙ୍କ ପୁତ୍ର କୃଷଚନ୍ଦ୍ର ଟିକାୟତ କଦଳୀ ଗଡ (ପନକିମାଳ) ଠାରେ ଏକ ଦୁର୍ଗ ନିର୍ମାଣ କରି ସେଠାରେ ସମୟ ସମୟରେ ରହୁଥିଲେ । ରାଜା ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କ ଜୀବିତାବସ୍ଥାରେ ପୁତ୍ର କୃଷଚନ୍ଦ୍ର ଟିକାୟତଙ୍କର ଖ୍ରୀ ୧୯୦୧ରେ ମୃତ୍ୟୁ ହେଲା । ରାଜା ବିଷ୍ଣୁଚନ୍ଦ୍ର ଜେନାମଣି ପୁତ୍ର ଶୋକରେ ଭାଙ୍ଗି ପଡ଼ିଲେ ଏବଂ ଖ୍ରୀ ୧୯୦୨ରେ ଇହଲୀଳା ସମ୍ବରଣ କଲେ ।

ତାଙ୍କ ମୃତ୍ୟୁ ପରେ ତାଙ୍କର ନାତି ଗୌର ଚନ୍ଦ୍ର ଦେଓ ଜେନାମଣି ସିଂହାସନ ଆରୋହଣ କଲେ । ସେ ମାତ୍ର ପାଞ୍ଚବର୍ଷ ରାଜ୍ୟ ଶାସନ କରି ଖ୍ରୀ ୧୯୦୬ରେ ମୃତ୍ୟୁ ମୁଖରେ ପଡ଼ିଲେ । ଗୌରଚନ୍ଦ୍ର ଅପୁତ୍ରିକ ଥିଲେ ଏବଂ ମୃତ୍ୟୁପୂର୍ବରୁ ଏକ 'ଉଇଲ୍' ଲେଖି ବଣେଇରାଜା ନୀଳାମ୍ବର ଚନ୍ଦ୍ର ଦେବଙ୍କ ଔରସପୁତ୍ର ଏବଂ ରାଜା ଧରଣୀଧର ଇନ୍ଦ୍ରଦେବଙ୍କର ସାବତଭାଇ ବୀରଚନ୍ଦ୍ର ଯଦୁମଣି ଦେବଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ସେ ଖ୍ରୀ ୧୮୯୪ରେ ବଣାଇରେ ଜନ୍ମ ଗ୍ରହଣ କରିଥିଲେ ।

ବୀରଚନ୍ଦ୍ର ଯଦୁମଣିଦେବ ଜେନାମଣିଃ- (ଖ୍ରୀ ୧୯୦୬-୧୯୪୮)

ରେଢ଼ାଖୋଲର ପଞ୍ଚଦଶ ଓ ସର୍ବ ଶେଷ ରାଜା ରୂପେ ବୀରଚନ୍ଦ୍ର ଯଦୁମଣି ଦେବ ଜେନାମଣି ଖ୍ରୀ ୧୯୦୬ରେ ସିଂହାସନ ଆରୋହଣ କଲେ । ସେତେବେଳେକୁ ସେ ନାବାଳକ ଥିଲେ । ରାଜା ଯଦୁମଣି ରାୟପୁରସ୍ଥିତ ରାଜ କୁମାର କଲେଜରେ ପଢୁଥିବା ସମୟରେ ସୋନପୁରର ପୂର୍ବତନ ରାଜା ପ୍ରତାପରୁଦ୍ର ସିଂହ ଦେବଙ୍କ କନ୍ୟା ଏବଂ ତତ୍ କାଳୀନ ରାଜା ବୀରମିତ୍ରୋଦୟ ସିଂହ ଦେବଙ୍କ ଭଗିନୀଙ୍କୁ ଖ୍ରୀ ୧୯୧୨ ରେ ବିବାହ କରିଥିଲେ । ରାଜା ଯଦୁମଣି ଦେବ ଜେନାମଣି ଖ୍ରୀ ୧୯୧୬ ନଭେମ୍ବର ମାସଠାରୁ ସମ୍ପୂର୍ଣ୍ଣ ଶାସନ କ୍ଷମତା ପାଇଥିଲେ ।

ରାଜା ଯଦୁମଣିଙ୍କର ପ୍ରଥମପୁତ୍ର ଗିରିଷ୍ଟନ୍ଦ୍ର ଟିକାଏତ ଖ୍ରୀ ୧୯୧୪ରେ ଜନ୍ମ ଗ୍ରହଣ କରିଥିଲେ । ରାଜାଙ୍କର ଚାରିପୁତ୍ର ଓ ଚାରୋଟି କନ୍ୟା ଜନ୍ମ ଗ୍ରହଣ କରିଥିଲେ । ଯୁବରାଜ ଗିରିଷ୍ଟନ୍ଦ୍ର ଟୀକାୟତ ରାଜକୁମାର କଲେଜ ରାୟପୁର ଠାରେ ଶିକ୍ଷା ଗ୍ରହଣ କରି ସାରିଲା ପରେ ପଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ କ୍ଷମତା ପାଇଥିଲେ ।

ଯୁବରାଜ ଗିରିଷ୍ଟନ୍ଦ୍ର ଟିକାଏତ ଖ୍ରୀ ୧୯୩୭ରେ ନେପାଳର ସର୍ବୋଚ୍ଚ ସେନାଧକ୍ଷ ସାର୍ ମୋହନ ସୁମଶେର ଜଙ୍ଗ ବାହଦୂର ରାଣାଙ୍କ କନ୍ୟାର ପାଣିଗ୍ରହଣ କରିଥିଲେ । ତାଙ୍କର ତିନିପୁତ୍ରଙ୍କ ମଧ୍ୟରୁ ବଡପୁତ୍ର ହରିଶଙ୍କର ଖ୍ରୀ ୧୯୪୧ରେ ଜନ୍ମ ଗ୍ରହଣ କରିଥିଲେ ।

ରେଢ଼ାଖୋଲ ରାଜ୍ୟ ରାଜା, ବିଷ୍ଣୁ ଚନ୍ଦ୍ର ଜେନାମଣିଙ୍କ ସମୟରେ ଖ୍ରୀ ୧୮୬୨ ଏପ୍ରିଲ୍ ୩୦ ତାରିଖରୁ ସେଣ୍ଟ୍ରାଲ୍ ପ୍ରୋଭିନସ୍‌ରେ ମିଶିଲା । ଖ୍ରୀ ୧୮୬୭ରେ ବ୍ରିଟିଶ ସରକାର ରେଢ଼ାଖୋଲକୁ ଏକ ସ୍ୱତନ୍ତ୍ର ସାମନ୍ତ ରାଜ୍ୟ ରୂପେ ସ୍ୱୀକୃତି ଦେଲେ । ଖ୍ରୀ ୧୯୦୫ରେ ରେଢ଼ାଖୋଲ ରାଜ୍ୟ, ପାଟଣା, କଳାହାଣ୍ଡି, ବାମଣ୍ଡା ଓ ସୋନପୁର ରାଜ୍ୟ

ସହ ଓଡ଼ିଶା କମିଶନଙ୍କ ଅଧୀନକୁ ଆସିଲା । ସେହି ସମୟରେ ବଣେଇ ଓ ଗାଙ୍ଗପୁର ରାଜ୍ୟ ଛୋଟନାଗପୁର ଡିଭିଜନରୁ ଆସି ଓଡ଼ିଶା ସହ ମିଶିଲା ।*

ରାଜା ବିଷ୍ଣୁଚନ୍ଦ୍ର ଜେନାମଣିଙ୍କ ଜୀବନ କାଳରେ ରେଢ଼ାଖୋଲ ରାଜ୍ୟ ଓଡ଼ିଶା ଡିଭିଜନକୁ ଆସି ପାରିଲା ନାହିଁ । ଏହା ସେଣ୍ଟ୍ରାଲ ପ୍ରୋଭିନ୍‌ସ ବା ମଧ ପ୍ରଦେଶରେ ରହିଥିଲା । ଖ୍ରୀ ୧୯୦୨ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା ।

ରାଜା ଗୌରଚନ୍ଦ୍ର ଜେନାମଣିଙ୍କ ସମୟରେ ରେଢ଼ାଖୋଲ ରାଜ୍ୟ ଓଡ଼ିଶା ଡିଭିଜନରେ ମିଶି ବଙ୍ଗ ପ୍ରଦେଶର ଅନ୍ତର୍ଗତ ଥିଲା । ନିଜ ରାଜ୍ୟ ଓଡ଼ିଶା କମିଶନରଙ୍କ ଅଧୀନକୁ ଆସିବାର ଏକ ବର୍ଷ ପରେ ଅର୍ଥାତ୍ ଖ୍ରୀ ୧୯୦୬ରେ ତାଙ୍କର ମୃତ୍ୟୁ ହୋଇଗଲା ।

ରେଢ଼ାଖୋଲ ଗଡଜାତ ରାଜ୍ୟର ଶେଷ ରାଜା ବୀରଚନ୍ଦ୍ର ଯଦୁମଣି ଦେଓ ଜେନାମଣି ଖ୍ରୀ ୧୯୦୬ରେ ସିଂହାସନ ଆରୋହଣ କରିଥିଲେ । ତାଙ୍କ ରାଜତ୍ୱ ସମୟରେ ଖ୍ରୀ ୧୯୧୨ରେ ବିହାର-ଓଡ଼ିଶା ରାଜ୍ୟ ଗଠିତ ହୋଇ ତାର ରାଜଧାନୀ ପାଟନା ଠାରେ ରହିଲା ।

ଓଡ଼ିଶା ବଙ୍ଗଳାରୁ ଅଲଗା ହୋଇ ବିହାର ସଙ୍ଗେ ଏକ ଶାସନାଧୀନ ହୋଇରହିଲା । ସେତେବେଳ ଓଡ଼ିଶା କାଉନ୍‌ସିଲରେ କୁଳବୃଦ୍ଧ ମଧୁସୂଦନ, ରାୟ ବାହଦୂର ଗୋକୁଳା ନନ୍ଦ ଚୌଧୁରୀ, ରାୟ ବାହାଦୂର ସୁଦାମ ଚରଣ ନାଏକ, କନିକା ରାଜା ପ୍ରମୁଖ ସଭ୍ୟ ଥିଲେ । ପରେ କୁଳ ବୃଦ୍ଧ ମଧୁସୂଦନ ଓ କନିକା ରାଜା ବିହାର ଓଡ଼ିଶା ସରକାରରେ ମନ୍ତ୍ରୀରୂପେ କାର୍ଯ୍ୟ କରୁଥିଲେ । ତାଙ୍କ ଉଦ୍ୟମରେ ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର କେତେକ ସଂଶୋଧନ କରାଯାଇଥିଲା । ରେଢ଼ାଖୋଲ ରାଜା ଓ ଅନ୍ୟାନ୍ୟ ରାଜାମାନଙ୍କର ନିଜ ନିଜ ରାଜ୍ୟରେ ସେମାନଙ୍କର କ୍ଷମତା ଓ ଅଧିକାର ଅକ୍ଷୁର୍ଣ୍ଣ ରହିଥିଲା ।

ବ୍ରିଟିଶ ଶାସନରେ ଭାରତୀୟମାନଙ୍କୁ ଭାଗୀଦାର କରିବା ପାଇଁ ଖ୍ରୀ ୧୯୨୮ରେ ୭ଜଣ ଇଂରେଜ ସଭ୍ୟଙ୍କୁ ନେଇ ସାଇମନ୍ କମିଶନ ଗଠିତ ହୋଇଥିଲା । ଉତ୍କଳ ସମ୍ମିଳନୀ ପକ୍ଷରୁ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଘୋଷଣା କରିବା ପାଇଁ ଏକ ସ୍ମାରକ ପତ୍ର ସାଇମନ କମସନ୍‌କୁ କଲିକତା ଠାରେ ଦିଆଗଲା । କମିଶନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଆବଶ୍ୟକତା ଅନୁଭବ କରି 'ଅଟଲି ସବ୍ କମିଟି' ଗଠନ କଲେ ।

ଅଟଲି କମିଟି ଓଡ଼ିଆ ଭାଷୀ ଅଞ୍ଚଳର ଅଧିବାସୀଙ୍କ ଦାବି ଯଥାର୍ଥ ବୋଲି ସୁପାରିଶ କଲେ । ଖ୍ରୀ ୧୯୩୦ ପ୍ରଥମ ଗୋଲଟେବୁଲ୍ ବୈଠକରେ ଓଡ଼ିଶାର ପ୍ରତିନିଧି ପାରଳାଖେମୁଣ୍ଡି ମହାରାଜା ଶ୍ରୀଯୁକ୍ତ କୃଷଚନ୍ଦ୍ର ଗଜପତି ନାରାୟଣ ଦେଓ ବିଭିନ୍ନ ଯୁକ୍ତି ଓ ପ୍ରମାଣ ସହ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଦୃଢ଼ ଦାବି ଉପସ୍ଥାପନ କରିଥିଲେ ।

---

* *Princely States of Orissa- by J.K. Samal, P-63 (1905-1947)*

ପ୍ରଥମ ଗୋଲଟେବୁଲ ବୈଠକରେ ବ୍ରିଟିଶ ସରକାର କେଉଁ କେଉଁ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବ ଓ ଏହାର ଆର୍ଥିକ ସ୍ଥିତି କଣ ହେବ, ସେ ସମ୍ବନ୍ଧରେ ପରୀକ୍ଷା କରି ରିପୋର୍ଟ ଦେବାପାଇଁ 'ଓଡ୍‌ନେଲ୍ କମିଟି' ଗଠନ କଲେ । ବିସ୍ତୃତ ଅନୁସନ୍ଧାନ ଓ ସାକ୍ଷ୍ୟଗ୍ରହଣ ପରେ ଏହି କମିଟି ମତ ଦେଲେ ଯେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ବର୍ତ୍ତମାନର ଓଡ଼ିଶା ଡ଼ିଭିଜନ, ଅନୁଗୋଳ, ରାୟପୁର ଜିଲ୍ଲାର ଖଡ଼ିଆଳ ଜମିଦାରୀ, ଗଞ୍ଜାମ ଜିଲ୍ଲାର ଅଧିକାଂଶ ଭାଗ ଓ ଭାଇଜାଗପଟମ୍ ଏଜେନ୍‌ସିକୁ ନେଇ ଗଠିତ ହେଉ ।

ଉତ୍କଳ ସମ୍ମିଳନୀ ଏହିଦାବି ଗ୍ରହଣ ନକରି ବଙ୍ଗଳାରେ ଥିବା ମେଦିନୀପୁର ଓ ବାଙ୍କୁଡା, ବିହାର-ଓଡ଼ିଶା ପ୍ରଦେଶରେ ରହିଥିବା ସିଂହଭୂମି, ରାଞ୍ଚି ଓ ମାନପୁର ଜିଲ୍ଲା, ସେଣ୍ଟ୍ରାଲ ପ୍ରୋଭିନ୍‌ସର ରାୟପୁର ଓ ବିଳାସପୁର ଜିଲ୍ଲାର ଫୁଲଝର ଆଦି ଅଞ୍ଚଳ ଓ ମାନ୍ଦ୍ରାଜରେ ଥିବା ଟିକାଲି, ମଞ୍ଜୁଷା ସୋମପେଣ୍ଟ, ଗଞ୍ଜାମ ଜିଲ୍ଲାର ଦକ୍ଷିଣ ବ୍ରହ୍ମପୁର ତାଲୁକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ଅନ୍ତର୍ଭୁକ୍ତ କରିବାକୁ ଦାବି କଲେ । ଓଡନେଲ୍ କମିଟି ଉତ୍କଳ ସମ୍ମିଳନୀର ସମସ୍ତ ଦାବି ଗ୍ରହଣ କଲେ ମଧ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଗଲା । ଖ୍ରୀ ୧୯୩୬ ଏପ୍ରିଲ୍ ମାସ ପହିଲା ଦିନରୁ ଏହା କାର୍ଯ୍ୟକାରୀ କରାଗଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ କିଛିଦିନ ଲାଟ ଶାସନ ଚାଲିଲା । ସାର୍ ଜନ୍ ଅଷ୍ଟିନ୍ ହବାକ୍ ଏହାର ପ୍ରଥମ ଗଭର୍ଣ୍ଣର ରହିଲେ ।

ଖ୍ରୀ ୧୯୩୭ରେ ପ୍ରଥମ ନିର୍ବାଚନ ହୋଇ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହମନଙ୍କୁ ନେଇ ତିନିଜଣିଆ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ପାରଳାଖେମୁଣ୍ଡି ମହାରାଜା ଏଥିରେ ପ୍ରଧାନମନ୍ତ୍ରୀ ଥିଲେ । ଏହି ମନ୍ତ୍ରୀମଣ୍ଡଳ ସ୍ୱଳ୍ପକାଳ କାର୍ଯ୍ୟକଲା ପରେ କଂଗ୍ରେସ ସମଗ୍ର ଭାରତରେ ଶାସନଭାର ଗ୍ରହଣ କଲା । ଓଡ଼ିଶାରେ କଂଗ୍ରେସର ମନ୍ତ୍ରିମଣ୍ଡଳ ଗଠିତ ହେଲା । ତିନିଜଣିଆ ମନ୍ତ୍ରିମଣ୍ଡଳରେ ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ, ଶ୍ରୀ ବୋଧରାମ ଦୁବେ ଓ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ମନ୍ତ୍ରୀ ଥିଲେ । ଶ୍ରୀ ରାଜକୃଷ୍ଣ ବୋଷ, ଶ୍ରୀ ଯଦୁମଣି ମଙ୍ଗରାଜ ଓ ଶ୍ରୀ ଜଗନ୍ନାଥ ମିଶ୍ର ତିନିଜଣ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଥିଲେ ।

ଖ୍ରୀ ୧୯୩୯ ମସିହାରେ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶରେ ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲା । ଖ୍ରୀ ୧୯୪୧ ପର୍ଯ୍ୟନ୍ତ ଓଡ଼ିଶା ରାଜ୍ୟପାଳଙ୍କ ଶାସନାଧୀନରେ ରହିଥିଲା । ୧୯୪୧ ମସିହାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଏକ ତିନିଜଣିଆ ମନ୍ତ୍ରିମଣ୍ଡଳ ଗଠିତ ହେଲା । ସେଥିରେ ପଣ୍ଡିତ ଗୋଦାବରୀଶ ମିଶ୍ର, ଅବଦୁସ୍ ଶୋଭାନ୍ ଖାଁ ଅନ୍ୟତମ ମନ୍ତ୍ରୀଥିଲେ ଏବଂ ପ୍ୟାରୀଶଙ୍କର ରାୟ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଥିଲେ । ଏହି ମନ୍ତ୍ରିମଣ୍ଡଳ ୧୯୪୪ ମସିହା ଜୁନ୍ ମାସ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲା ।

'ଭାରତ ଛାଡ' ଆନ୍ଦୋଳନ ଫଳରେ ବହୁତ କଂଗ୍ରେସ କର୍ମୀ ଗିରଫ ହୋଇଥିଲେ । ୧୯୪୫ ମସିହାରେ ବ୍ରିଟିଶ ସରକାର ସମସ୍ତ ରାଜନୈତିକ କର୍ମୀମାନଙ୍କୁ ଖଲାସ କରିଥିଲେ । ବ୍ରିଟିଶ ସରକାର ଓ କଂଗ୍ରେସ ମଧ୍ୟରେ କ୍ଷମତା ହସ୍ତାନ୍ତରର ପ୍ରାଥମିକ ବ୍ୟବସ୍ଥା ସ୍ୱରୂପ ପ୍ରଦେଶ ମାନଙ୍କରେ ନିର୍ବାଚନ ହେଲା । ରାଜ୍ୟ ବିଧାନସଭାର ୬୦ଟି ସ୍ଥାନରୁ ୪୦ଟି ସ୍ଥାନରେ କଂଗ୍ରେସ ଜୟଯୁକ୍ତ ହୋଇ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସେଥିରେ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ଅନ୍ୟତମ ମନ୍ତ୍ରୀଥିଲେ । ପରେ ଶ୍ରୀ ବିଶ୍ୱାସରାୟ ଇସ୍ତଫା ଦେବାରୁ ତାଙ୍କ ସ୍ଥାନରେ ଶ୍ରୀ ସଦାଶିବ ତ୍ରିପାଠୀ ସ୍ଥାନ ପାଇଥିଲେ । ଶ୍ରୀ ରାଜକୃଷ୍ଣ ବୋଷ ଓ ଲାଲା ରଣଜିତ୍ ସିଂହ ବରିହା ପରେ ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିଲେ ।

୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ପୂର୍ଣ୍ଣ ସ୍ୱାଧୀନତା ପାଇଲା । ରେଢ଼ାଖୋଲ ସମେତ ୨୬ଟି ଗଡ଼ଜାତ ରାଜ୍ୟ ଓଡ଼ିଶା ପ୍ରଦେଶ ସହିତ ନ ମିଶି ''ପୂର୍ବାଞ୍ଚଳ ରାଜନ୍ୟ ପରିଷଦ'' ଗଠନ କରି ସ୍ୱାଧୀନ ହୋଇ ରହିବା ପାଇଁ ପ୍ରସ୍ତୁତ ହେଲେ । ଓଡ଼ିଶାର ୧୧ଟି ରାଜ୍ୟ 'କ' ଶ୍ରେଣୀ, ୧୨ଟି ରାଜ୍ୟ 'ଖ' ଶ୍ରେଣୀ ଓ ତିନିଗୋଟି 'ଗ' ଶ୍ରେଣୀରେ ବିଭକ୍ତ ହୋଇଥିଲା । ଗଡ଼ଜାତର ପ୍ରଜାମଣ୍ଡଳ ସେଠାରୁ ରାଜୁତା ଶାସନ ଲୋପକରି ଓଡ଼ିଶା ସହିତ ମିଶ୍ରଣ ପାଇଁ ଆନ୍ଦୋଳନ ଚଳାଇଥିଲେ ।

ନୀଳଗିରିର ଶାସକ ଆଦିବାସୀଙ୍କୁ ମତେଇ ଦେବାରୁ ଗଡଜାତର ପ୍ରଜାମଣ୍ଡଳ ବିଶେଷ କରି ଅଣ ଆଦିବାସୀ ଓ ଆଦିବାସୀଙ୍କ ଭିତରେ ଭୀଷଣ ସଂଘର୍ଷ ଲାଗିଗଲା । ସେଠାକାର ଶାସକ ତାକୁ ଆୟତ୍ତ ନ କରିପାରିବାରୁ କେନ୍ଦ୍ର ସରକାର ବାଧ ହୋଇ ହସ୍ତକ୍ଷେପ କଲେ । କେନ୍ଦ୍ରର ପରାମର୍ଶ କ୍ରମେ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଓଡ଼ିଶା ସରକାର ୧୯୪୭ ନଭେମ୍ବର ମାସରେ ନୀଳଗିରି ଶାସନ ହାତକୁ ନେଲେ ।

କେନ୍ଦ୍ରର ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ ଓ ଭି.ପି. ମେନନ କଟକ ଠାରେ ୧୯୪୭ ଡିସେମ୍ବର ୧୪ ତାରିଖ ଦିନ ୧୦ ଘଟିକା ସମୟରେ କେବଳ 'ଖ' ଓ 'ଗ' ଶ୍ରେଣୀ ରାଜ୍ୟର ଶାସକମାନଙ୍କ ସଙ୍ଗେ ରାଜ୍ୟ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରିବାକୁ ପ୍ରବର୍ତ୍ତାଇ ଥିଲେ । ସେଠାରେ 'ଖ' ଓ 'ଗ' ଶ୍ରେଣୀ ଶାସକଙ୍କ ମଧ୍ୟରେ ରେଢ଼ାଖୋଲ, ହିନ୍ଦୋଳ, ତାଳଚେର, ପାଲଲହଡା, ଆଠଗଡ, ବଡାମ୍ବା, ଖଣ୍ଡପଡା, ଖରସୁଆଁ, ନରସିଂହପୁର, ନୀଳଗିରି, ରଣପୁର ଓ ଦଶପଲ୍ଲା ଉପସ୍ଥିତ ଥିଲେ ।

ସେହିଦିନ ଅପରାହ୍ଣରେ 'କ' ଶ୍ରେଣୀର ଏଗାର ଜଣ ଶାସକ ବାମଣ୍ଡା, ବୌଦ, ଢେଙ୍କାନାଳ, ଗାଙ୍ଗପୁର, କଳାହାଣ୍ଡି, କେନ୍ଦୁଝର, ପାଟଣା, ମୟୂରଭଞ୍ଜ, ନୟାଗଡ, ଷଢ଼େଇକଳା ଓ ସୋନପୁରଙ୍କ ସହିତ ଘରୋଇ ମନ୍ତ୍ରୀଙ୍କ ଆଲୋଚନା ହୋଇଥିଲା ।

ଖ୍ରୀ ୧୯୪୭ ଡିସେମ୍ବର ୧୪ ତାରିଖ ଦିନ ସନ୍ଧ୍ୟାରେ 'ଖ' ଓ 'ଗ' ଶ୍ରେଣୀର ଶାସକମାନେ ରାଜ୍ୟ ମିଶ୍ରଣ ଚୁକ୍ତିରେ ହସ୍ତଖତ କରିଥିଲେ ଏବଂ ୧୫ ତାରିଖ ଦିନ ମୟୂରଭଞ୍ଜକୁ ଛାଡ଼ି ଅନ୍ୟ 'କ' ଶ୍ରେଣୀର ଶାସକମାନେ ଚୁକ୍ତିରେ ସ୍ୱାକ୍ଷର କଲେ ।

୧୯୪୮ ମସିହା ଜାନୁଆରୀ ପହିଲା ଦିନ କେବଳ ମୟୂରଭଞ୍ଜକୁ ଛାଡି ଅନ୍ୟ ୨୫ଟି ଗଡଜାତ ଓଡ଼ିଶା ସହିତ ଆନୁଷ୍ଠାନିକ ଭାବେ ମିଶିଗଲା । ମୟୂରଭଞ୍ଜ ଠିକ୍ ଏକବର୍ଷ ପରେ ୧୯୪୯ ମସିହା ଜାନୁଆରୀ ପହିଲା ଦିନ ଓଡ଼ିଶା ସହିତ ମିଶିଲା । ମୟୂରଭଞ୍ଜ ଓଡ଼ିଶାରେ ନ ମିଶିଥିବାରୁ ୧୯୪୮ ମସିହା ମେ ମାସରେ ଭାରତ ସରକାର ଘୋଷଣା କଲେଯେ ଷଡ଼େଇକଳା ଓ ଖରସୁଆଁ ଓଡ଼ିଶାରୁ କାଢ଼ି ନେଇ ବିହାରରେ ମିଶାଗଲା । ଏହା ୧୯୪୯ ମସିହା ଅଗଷ୍ଟ ମାସରେ କାର୍ଯ୍ୟକାରୀ ହୋଇଥିଲା ।

୧୯୪୮ ମସିହା ଜାନୁଆରୀ ପହିଲା ଦିନ ଠାରୁ ରେଢ଼ାଖୋଲ ରାଜ୍ୟ ସମ୍ବଲପୁର ଜିଲ୍ଲାର ଏକ ସବ୍‌ଡିଭିଜନ ରୂପେ ବର୍ତ୍ତମାନର ଓଡ଼ିଶା ପ୍ରଦେଶରେ ସବୁଦିନ ପାଇଁ ମିଶିଗଲା ।

### ରେଢ଼ାଖୋଲର ରାଜ ବଂଶାବଳୀ

୧. ଜଗଦୀଶ୍ୱର ଦେବ (ଖ୍ରୀ ୧୫୬୫ - ୧୬୦୫)



୨. ଫାପତ ଦେବ (ଖ୍ରୀ ୧୬୦୫ - ୧୬୨୫)



୩. ଅର୍ଜୁନ ଦେବ (ଖ୍ରୀ ୧୬୨୫ - ୧୬୫୦)



୪. ଝୁନୁରୁ ଦେବ (ବୈକୁଣ୍ଠ ଜେନାମଣି) (ଖ୍ରୀ ୧୬୫୦ - ୧୬୭୫)



୫. ଭାଗୀରଥି ଜେନାମଣି (ଖ୍ରୀ ୧୬୭୫ - ୧୬୯୫)



୬. ଗଦାଧର ଜେନାମଣି (ଖ୍ରୀ ୧୬୯୫ - ୧୭୧୦)



୭. ସଦାନନ୍ଦ ଜେନାମଣି (ଖ୍ରୀ ୧୭୧୦ - ୧୭୨୫)



୮. ପଦ୍ମନାଭ ଜେନାମଣି (ଖ୍ରୀ ୧୭୨୫ - ୧୭୪୦)



୯. ବୀରବର ଜେନାମଣି (ଖ୍ରୀ ୧୭୪୦ - ୧୭୬୦)



୧୦. ଛତ୍ରବୀର ଢେନାମଣି (ଖ୍ରୀ ୧୭୬୦ - ୧୭୭୫)



୧୧. ନୀଳକଣ୍ଠ ଢେନାମଣି (ଖ୍ରୀ ୧୭୭୫ - ୧୭୯୦)



୧୨. ବୀରବୁଢ଼ା ଢେନାମଣି (ଖ୍ରୀ ୧୭୯୦ - ୧୮୧୦)



୧୩. ଚନ୍ଦ୍ରଶେଖର ଢେନାମଣି (ଖ୍ରୀ ୧୮୧୦ -୧୮୨୫)



୧୪. ବିଷ୍ଣୁ ଚନ୍ଦ୍ର ଢେନାମଣି (ଖ୍ରୀ ୧୮୨୫ - ୧୯୦୨)
(ଖ୍ରୀ ୧୮୬୭ରେ ବ୍ରିଟିଶ ସରକାରଙ୍କ ସନନ୍ଦ ପ୍ରଦାନ)



୧୫. ଗୌରଚନ୍ଦ୍ର ଢେନାମଣି (ଖ୍ରୀ ୧୯୦୨ - ୧୯୦୬)



୧୬. ବୀରଚନ୍ଦ୍ର ଯଦୁମଣି ଦେଓ
ଢେନାମଣି (ଖ୍ରୀ ୧୯୦୬ - ୧୯୪୮)

ବୀରଚନ୍ଦ୍ର ଯଦୁମଣି ଦେଓ ଢେନାମଣି ୧୯୭୩ ମସିହା ନଭେମ୍ବର ମାସ ୧୪ ତାରିଖ, ବୁଧବାର ସକାଳେ ଇହଧାମ ତ୍ୟାଗକଲେ । ବର୍ତ୍ତମାନ ତାଙ୍କର ନିମ୍ନଲିଖିତ ସନ୍ତାନ ସନ୍ତତି ଜୀବିତ ଥିବାର ଜଣାଯାଏ ।

ଶ୍ରୀମତୀ ଶୈଳେନ୍ଦ୍ର କୁମାରୀ ଦେବୀ (ପାଟଢେମା)
ଶ୍ରୀ ଗୀରିଶ ଚନ୍ଦ୍ର ଦେଓ
ଶ୍ରୀମତୀ ନଗେନ୍ଦ୍ର କୁମାରୀ ଦେବୀ (ମଝିଆଢେମା)
ଶ୍ରୀ ସୁରେଶ ଚନ୍ଦ୍ର ଦେଓ
ଶ୍ରୀମତୀ କମଳ କୁମାରୀ ଦେବୀ (ଟିକିଢେମା)
ଶ୍ରୀ ସତ୍ୟ ନାରାୟଣ ଚନ୍ଦ୍ର ଦେଓ
ଶ୍ରୀମତୀ କଦମ୍ବ କୁମାରୀ ଦେବୀ (ମଣିଢେମା)
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦେଓ ।

## ତୃତୀୟ ପରିଚ୍ଛେଦ

# ରେଢ଼ାଖୋଲ ରାଜ୍ୟ ଗଠନର ପୂର୍ବାବସ୍ଥା ଓ ପାରିପାର୍ଶ୍ୱିକ ରାଜପରିବାର

ଜନବସତି କାଳର ପ୍ରାଚୀନତା ଦୃଷ୍ଟିରୁ ଓଡ଼ିଶାର ଉପକୂଳ ଅଞ୍ଚଳକୁ ବାଦଦେଲେ ଓଡ଼ିଶାର ବୃହତ୍ତମ ନଦୀ ମହାନଦୀ ଉପତ୍ୟକାର ବୌଦ ଓ ସୋନପୁର ଅଞ୍ଚଳ ଅତି ପ୍ରାଚୀନ ଅଟେ । ଖ୍ରୀଷ୍ଟପୂର୍ବ ଶତକରେ ଅର୍ଥାତ୍ ବୌଦ୍ଧଯୁଗରୁ ବୌଦରେ ବୌଦ୍ଧବିହାର ଓ ମଠ ପ୍ରଭୃତିର ଅବସ୍ଥିତି କେତେକ ବୌଦ୍ଧ କୀର୍ତ୍ତିର ଭଗ୍ନାବଶେଷରୁ ଜଣାଯାଏ । ରେଢ଼ାଖୋଲର ଯେଉଁ ଅଞ୍ଚଳରୁ ମହାନଦୀର ଉପନଦୀ କେରାଣ୍ଡି ଯୋର ଓ ଶୁରୁବାଲି ନାଳ ପ୍ରବାହିତ ସେହି ଅଞ୍ଚଳର ସଭ୍ୟତା ଓ ସଂସ୍କୃତି ବୌଦର ସେହି ପ୍ରାଚୀନ ସଭ୍ୟତା ସହ ସଂଶ୍ଳିଷ୍ଟ ।

ବୌଦ ଅଞ୍ଚଳରେ ଓଡ଼ିଶାର ଭୌମକରଙ୍କ ଶାସନର ପ୍ରତିଷ୍ଠା ପୂର୍ବରୁ ଭଂଜବଂଶ ଶାସନ ପ୍ରତିଷ୍ଠା କରିଥିଲେ । ଭଞ୍ଜବଂଶର ସର୍ବପୁରାତନ ରାଜା ନେତଭଞ୍ଜ ଅନୁଗୋଳ ନିକଟସ୍ଥ ଅଙ୍ଗୁଳକ ପତନ ବା ନବ ଅନୁଗୋଳ ପତନ ଠାରୁ ଏହି ତାମ୍ର ଶାସନ ଦାନ କରିଛନ୍ତି । • ଏଥିରୁ ଜଣାଯାଏ ବ୍ରାହ୍ମଣୀ ନଦୀ ଓ ମହାନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ଢ଼େଙ୍କାନାଳ, ଆଠ ମଲ୍ଲିକ, ରେଢ଼ାଖୋଲର କିଛି ଅଂଶ ଭଞ୍ଜ ସାମ୍ରାଜ୍ୟର ଅନ୍ତର୍ଗତ ଥିଲା ।

ଭୌମକରଙ୍କ ଶାସନ କାଳରେ "କୋଦାଳକ ମଣ୍ଡଳ" ପ୍ରତିଷ୍ଠା ହେବା ପରେ ଭଞ୍ଜମାନେ ଢ଼େଙ୍କାନାଳ ଜିଲ୍ଲା ଅଞ୍ଚଳରୁ ବୌଦ, ସୋନପୁର ଅଞ୍ଚଳରେ ପ୍ରତିଷ୍ଠିତ ହୋଇ ଘୁମୁସର, ଦଶପଲ୍ଲା, ଫୁଲବାଣୀ ଅଞ୍ଚଳ ଅଧିକାର କରିଥିଲେ । କେନ୍ଦୁଝରର କିଛି ଅଂଶ ପାଲଲହଡା, ବାମଣ୍ଡା, ରେଢ଼ାଖୋଲ, ତାଳଚେର ଢ଼େଙ୍କାନାଳ ପ୍ରଭୃତିକୁ ନେଇ କୋଦାଳକମଣ୍ଡଳ ଗଠିତ ହୋଇଥିବା ଅନୁମିତ ହୁଏ । ଏହାର ରାଜଧାନୀ ବ୍ରାହ୍ମଣୀ ନଦୀ କୂଳ 'କୁଆଳ' ଥିଲା । ଏଠାରେ ସୂଲକି ରାଜା କାଞ୍ଚନସ୍ତମ୍ଭ ଖ୍ରୀଷ୍ଟିୟ ଅଷ୍ଟମ ଶତାବ୍ଦୀର ଶେଷ ଭାଗରେ ରାଜ୍ୟ ସ୍ଥାପନ କରିଥିଲେ । ତାଙ୍କର ପ୍ରପୁତ୍ର ରଣସ୍ତମ୍ଭ ଏକ ତାମ୍ର ଶାସନ ସମ୍ବତ୍ ୧୦୩ ବା ଖ୍ରୀ ୮୩୯ରେ ଦେଇଥିବା ଜଣାଯାଏ । ସେ ଭୌମରାଜା ୩ୟ ଶୁଭଙ୍କର ଦେବଙ୍କ ସାମନ୍ତ ରାଜା ଥିବା ଜଣାଯାଏ । ଢ଼େଙ୍କାନାଳର ହିନ୍ଦୋଳରୁ ମିଳିଥିବା ତାମ୍ର ଶାସନ ରଣସ୍ତମ୍ଭଙ୍କର ପ୍ରପୁତ୍ର ୨ୟ କୁଳସ୍ତମ୍ଭ ଦାନ କରିଥିଲେ । ସେଥିରେ ରଣସ୍ତମ୍ଭ ଭଗବାନ ସଦାଶିବଙ୍କ ପାଇଁ ବହୁତ ମନ୍ଦିର ନିର୍ମାଣ କରିଥିବା ପ୍ରମାଣ ମିଳେ । ରାଜଧାନୀ କୁଆଳଠାରେ ୮ଟି ଭଗ୍ନାବସ୍ଥାରେ ଥିବା ମନ୍ଦିର ଏହାର ପ୍ରମାଣ ।

---

• *ସୋନପୁର ଇତିହାସ - ସଦାନନ୍ଦ ଅଗ୍ରୱାଲ- ୧ମ ଭାଗ ପୃ - ୧୨ ।*

ସୁଲକି ରାଜବଂଶର ଦ୍ୱିତୀୟ କୁଳସ୍ତମ୍ଭଙ୍କ ପରେ କୌଣସି ରାଜାଙ୍କର ସନ୍ଧାନ ମିଳେ ନାହିଁ । ସମ୍ଭବତଃ ସୁଲକିମାନଙ୍କର ନିଜର ବଡ଼ିମା ଯୋଗୁଁ ଭୌମକରମାନେ କୋଦାଳକ ମଣ୍ଡଳକୁ ଦୁଇ ଭାଗରେ ବିଭକ୍ତ କଲେ ଏବଂ ଦୁଇଟି ନୂତନ ରାଜବଂଶ ତୁଙ୍ଗ ଓ ନନ୍ଦ ବଂଶ ପ୍ରତିଷ୍ଠା କଲେ । କୁଆଳର ଦକ୍ଷିଣ ପୂର୍ବକୁ ଐରାବତ ମଣ୍ଡଳ ନନ୍ଦ ବଂଶ ରାଜତ୍ୱରେ ଏବଂ ଉତ୍ତର ପଶ୍ଚିମକୁ ଯମଗର୍ତ୍ତ ମଣ୍ଡଳ ତୁଙ୍ଗ ବଂଶ ଅଧୀନରେ ରହିଲା । ତୁଙ୍ଗମାନଙ୍କର ମଣ୍ଡଳ କେନ୍ଦୁଝରର କିଛି ଅଂଶ, ବଣେଇ, ବାମଣ୍ଡାର କିଛି ଅଂଶ, ରେଢ଼ାଖୋଲ, ଢ଼େଙ୍କାନାଳର କିଛି ଅଂଶ, ପାଳଲହଡା, ଅନୁଗୋଳ, ତାଳଚେରକୁ ନେଇ ଗଠିତ ହୋଇଥିବାର ଜଣାଯାଏ । ସମ୍ବଲପୁର ଇତିହାସ ଲେଖକ ଶିବ ପ୍ରସାଦ ଦାଶ କୋଶଳାନନ୍ଦ କାବ୍ୟର ଉଦାହରଣ ଦେଇ କହିଛନ୍ତି ଯେ, ସେଥିରେ ବଣାଇ ଯମଟାଙ୍ଗି (ଦକ୍ଷିଣ ପାର୍ବତ୍ୟ ଉଚ୍ଚଭୂମି) ରୂପେ ବର୍ଣ୍ଣିତ । କୋଇଡା ଅଞ୍ଚଳ ଏତେ ଉଚ୍ଚ ଯେ ଶୀତ ଋତୁରେ ସେଠାରେ ବରଫ ପଡେ । ସେ ଛୋଟନାଗପୁର ଅଞ୍ଚଳକୁ ଉତ୍ତର ଟାଙ୍ଗି ବୋଲି କହିଛନ୍ତି ।

ବଣାଇ ତୁଳନାରେ ରେଢ଼ାଖୋଲ, ପାଳଲହଡା, ଅନୁଗୋଳ, ନମ୍ନବା ସମତଳ ଭୂମି । ସୁତରାଂ ବଣାଇକୁ ଯମଟାଙ୍ଗି (ଦକ୍ଷିଣ ଉଚ୍ଚଭୂମି) କୁହାଯାଉଥିବା ସ୍ଥଳେ ରେଢ଼ାଖୋଲ, ପାଳଲହଡା, ଅନୁଗୋଳ ଅଞ୍ଚଳକୁ ଯମଗର୍ତ୍ତ (ଦକ୍ଷିଣ ଖାଲଭୂମି) ମଣ୍ଡଳ କୁହାଯାଉଥିଲା । ତୁଙ୍ଗ ବଂଶ ଯମଗର୍ତ୍ତ ମଣ୍ଡଳର ରାଣକ ଥିଲେ । ସେମାନଙ୍କର ରାଜଧାନୀ ମନ୍ଦାକିନୀ ନଦୀ କୂଳରେ ଅବସ୍ଥିତ ଥିଲା । ଐତିହାସିକ ନବୀନକୁମାର ସାହୁ ମାଙ୍କଡା ନାଳକୁ ମନ୍ଦାକିନୀ ନଦୀରୂପେ ଚିହ୍ନଟ କରିଛନ୍ତି । ନଦୀଟି କେନ୍ଦୁଝରର ତେଲକୋଇର ପାର୍ବତ୍ୟ ଅଞ୍ଚଳରୁ ବାହାରି ପାଳଲହଡା ବାଟେ ବ୍ରାହ୍ମଣୀ ନଦୀରେ ମିଶିଛି । ବିନୀତ ତୁଙ୍ଗ ଏହି ବଂଶର ସ୍ଥାପନ କର୍ତ୍ତା ଥିଲେ ଏବଂ ତାମ୍ର ଶାସନରେ ସେ "ନିଜ ଭୁଜ ମହିମୋପାର୍ଜିତ ଶ୍ରୀ" ବୋଲି କୀର୍ତ୍ତିତ ହୋଇଛନ୍ତି ।

ଢ଼େଙ୍କାନାଳ ତାମ୍ରଶାସନରୁ ଜଣାଯାଏ ଯମଗର୍ତ୍ତ ମଣ୍ଡଳର ପ୍ରଥମ ଶାସକ ହେଉଛନ୍ତି ଜୟସିଂହ ଏବଂ ସେ ସମ୍ବତ ୧୨୮ (ଖ୍ରୀ ୮୬୪)ରେ ଶାସକଥିବାର ଜଣାଯାଏ । ତୁଙ୍ଗ ଶାସନର ଚାରୋଟି ତାମ୍ରଶାସନ ବିନିତ ତୁଙ୍ଗ ଓ ଗୟଡ ତୁଙ୍ଗଙ୍କ ସମୟର । ଏହି ସମସ୍ତକୁ ବିଚାରକୁ ନେଇ ଐତିହାସିକମାନେ ତାଙ୍କର ବଂଶାବଳୀ ନିମ୍ନମତେ ସ୍ଥିର କରିଅଛନ୍ତି ।

ଜୟସିଂହ



ବିନୀତ ତୁଙ୍ଗ (୧ମ)



ଖଡଗ ତୁଙ୍ଗ



ବିନୀତ ତୁଙ୍ଗ (୨ୟ)



ସଲଙ୍ଗ ତୁଙ୍ଗ



ଗୟଡ ତୁଙ୍ଗ (ଜଗତ୍ ତୁଙ୍ଗ)



ଅପ୍‌ସରା ଦେବ



ଶାନ୍ତିକର ଦେବ ।

ବିନୀତ ତୁଙ୍ଗଙ୍କର ବଣେଇ ତାମ୍ର ଶାସନରୁ ଜଣାଯାଏ, ସେ ମହାରାଜା ରାଣକ ଥିଲେ ଏବଂ ''ଅଷ୍ଟାଦଶ ଗଣ୍ଡାଧିପତି'' ଥିଲେ । ସେ ଗଣ୍ଡ ବା ଆଦିମମାନଙ୍କୁ ବଶୀଭୂତ କରିଥିଲେ । ସେଥିରୁ ବିନୀତ ତୁଙ୍ଗ (ପ୍ରଥମ) ତାଙ୍କ ପୁତ୍ର ଖଡ଼୍ଗତୁଙ୍ଗ ଏବଂ ଖଡ଼୍ଗତୁଙ୍ଗଙ୍କ ପୁତ୍ର ବିନୀତ ତୁଙ୍ଗ (୨ୟ) ଥିବା ଜଣାଯାଏ ।* ସେ ଶିବଭକ୍ତ ଥିଲେ ଏବଂ ତାଳଚେର ତାମ୍ର ଶାସନରୁ ଜଣାଯାଏ ଯେ ଭୌମରାଜା ଶିବକର ଦେବ (୩ୟ)ଙ୍କର ଖ୍ରୀ ୮୮୫ରେ ସାମନ୍ତ ରାଜା ଥିଲେ ।

ଗୟଡ ତୁଙ୍ଗଙ୍କ ତାମ୍ର ଶାସନରୁ ଜଣାଯାଏ ସେ ଯମଗର୍ତ୍ତମଣ୍ଡଳର ଶକ୍ତିଶାଳୀ ଶାସକ ଥିଲେ । ସେ ଓଡ୍ର- ବିଷୟରୁ ଆସିଥିବା ଅନେକ ବ୍ରାହ୍ମଣଙ୍କୁ ତାଳଚେର ଅଞ୍ଚଳରେ ଜମିପଟ୍ଟା ଦେଇ ସ୍ଥାୟୀ ବସବାସ କରାଇଥିଲେ । ସମ୍ଭବତଃ ଭୌମକର ରାଜ୍ୟରୁ ବୌଦ ଅଞ୍ଚଳର ଭଞ୍ଜ ରାଜ୍ୟ ସେତେବେଳେ ସୋମବଂଶୀ ରାଜା ଯଯାତି(୧ମ)ଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ତେଣୁ ସୋମବଂଶୀ ଯଯାତିଙ୍କ ଓଡ୍ର ବିଷୟରୁ ଯେଉଁମାନେ ଭୌମଶାସନରେ ରହିବାକୁ ଚାହୁଁଥିଲେ ସେମାନଙ୍କୁ ତୋଷାଳୀ ରାଜ୍ୟର ଯମଗର୍ତ୍ତମଣ୍ଡଳରେ ଗୟଡ ତୁଙ୍ଗଙ୍କ ଅଧିନରେ ସ୍ଥାୟୀ ବସବାସ କରିବାକୁ ପଟ୍ଟା ଦିଆଯାଉଥିଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ରେଢ଼ାଖୋଲର ବ୍ରାହ୍ମଣଙ୍କୁ ସୋମବଂଶୀ ରାଜା ଜନମେଜୟ(୧ମ) ଯେତେବେଳେ ପ୍ରଥମେ ଶ୍ରୀପୁରରୁ ରାଜଧାନୀ ଉଠାଇ ସୋନପୁର ଅଞ୍ଚଳକୁ ଆସିନଥିଲେ, ସେତେବେଳେ ସୁବର୍ଣ୍ଣପୁର କ୍ୟାମ୍ପରୁ ଏକ ତ୍ରିଫଳୀ ତାମ୍ର ଶାସନ ତାଙ୍କ ରାଜତ୍ୱର ତୃତୀୟ ବର୍ଷରେ ଘୋଷଣା କରିଥିଲେ ।◆

---

* *Orissa District Gazetters - Sundargarh P.48*

◆ *ପ୍ରଥମ ମହାଭବଗୁପ୍ତ ଜନମେଜୟଙ୍କ ବଜ୍ରତେଜଳୀ ତାମ୍ର ଶାସନ - ସମ୍ବଲପୁର ଇତିହାସ ।*

ସେଥିରେ ସେ ରେଢ଼ାପୟଲ୍ଲୀକନ୍ଦରରୁ ଜନୈକ ଭଟ୍ଟପୁତ୍ରଙ୍କୁ ସୋନପୁର ନିକଟସ୍ଥ ତରଭା ନିକଟବର୍ତ୍ତୀ ଶୁକତେଲ ନଦୀକୂଳସ୍ଥ ମେରନ୍ଦା ଗ୍ରାମ (ବର୍ତ୍ତମାନ ମେଣ୍ଟଗ୍ରାମ)ରେ ବସତି ପାଇଁ ତାମ୍ରପତ୍ର ଦେଇଥିଲେ । ତେଣୁ ପୁରାତନ ରେଢ଼ାପୟଲ୍ଲୀ କନ୍ଦର (କନ୍ଦର=ଖୋଲ) ପରେ ରେଢ଼ାଖୋଲ ହୋଇଥିବା ସମ୍ଭବ । ସେତେବେଳେ ଭଞ୍ଜରାଜା ରଣଭଞ୍ଜଙ୍କ ସଙ୍ଗେ ଜନ୍ମେଜୟଙ୍କ ଯୁଦ୍ଧରେ ସମ୍ଭବତଃ ରେଢ଼ାଖୋଲର ଲୋକେ ସାହାଯ୍ୟ କରିଥିବେ ଏବଂ ପୁରସ୍କାର ସ୍ୱରୂପ ଏହି ଦାନପତ୍ରର ବ୍ୟବସ୍ଥା ହୋଇଥିବ କିମ୍ୱା ଉକ୍ତ ଭଟ୍ଟପୁତ୍ର ଭୌମ ଶାସନରୁ ସୋମବଂଶ ଶାସନକୁ ଯିବାକୁ ଚାହିଁଥିବେ । ଯାହା ହେଉ ରେଢ଼ାଖୋଲର ପ୍ରାକୃତିକ ପରିବେଶ ଏପରି ଯେ ଘଞ୍ଚ, ଜଙ୍ଗଲ ଓ ଉଚ୍ଚ ପାର୍ବତ୍ୟ ଭୂମି ମଧ୍ୟରେ ମଧ୍ୟରେ କନ୍ଦର ବା ଖୋଲ ସବୁ ରହିଛି । ଗୋଟିଏ ଖୋଲରୁ ଅନ୍ୟ ଖୋଲକୁ ଯିବାକୁ ସଂକୀର୍ଣ୍ଣ ଗିରିପଥ ଦେଇ ଯିବାକୁ ହୁଏ । ତେଣୁ ସେତେବେଳେ ରେଢ଼ାଖୋଲ କେତେକ ଖୋଲର ସମାହାରକୁ ବୁଝାଉଥିଲା କିମ୍ୱା ବ୍ରାହ୍ମଣୀ ଓ ମହାନଦୀର ବିଭାଜନ ରେଖାର କେବଳ ମହାନଦୀର ବାମଭାଗରେ ଥିବା ଉପତ୍ୟକାକୁ ବୁଝାଉଥିଲା ।

ଯମଗର୍ତ୍ତମଣ୍ଡଳର ଗୟଡ଼ତୁଙ୍ଗଙ୍କ ପରେ ଅପସରା ଦେବ ଭୌମବଂଶର ମହାରାଣୀ ଦଣ୍ଡୀ ମହାଦେବୀଙ୍କ ସାମନ୍ତ ରାଜା ଥିବାର ଏକ ତାମ୍ର ଶାସନରୁ ଜଣାଯାଏ । ଏହି ତାମ୍ରଶାସନ ମହାରାଣୀ ତାଙ୍କ ରାଣକ ଅପସରା ଦେବଙ୍କ ଅନୁରୋଧରେ ଜଣେ ବ୍ରାହ୍ମଣଙ୍କୁ ସମ୍ୱତ୍ ୧୩୦ (ଖ୍ରୀ ୯୧୬)ରେ ଶାନ୍ତିରି ଗ୍ରାମ ସୂର୍ଯ୍ୟପରାଗ ସମୟରେ ଦାନ କରିଥିଲେ । ଗୟଡ ତୁଙ୍ଗଙ୍କ ପରେ ସମ୍ଭବତଃ ଯମଗର୍ତ୍ତ ମଣ୍ଡଳ ତିନିଭାଗରେ ବିଭକ୍ତ ହୋଇଥିଲା । ଗୟଡଙ୍କ ପରେ ତୁଙ୍ଗ ଶାସନ ଅବସାନ ଘଟି ଶ୍ରୀ ପୁଞ୍ଜ ଓ ଅପସରା ଦେବ ଯମଗର୍ତ୍ତମଣ୍ଡଳର ଶାସନ ଗାଦି ପାଇଁ ଦାବି କରିଥିଲେ । ଏଥିରେ ଖିଜ୍ଜିଙ୍ଗକୋଟାର ରାଜା ବିରୋଧ କରିଥିଲେ ଏବଂ ତାଙ୍କ ଠାରେ ଆଶ୍ରୟ ନେଇଥିବା ଧରଣୀ ବରାହ ଓ ଉଦିତ ବରାହଙ୍କୁ ବଣାଇ ମଣ୍ଡଳକୁ ଯମଗର୍ତ୍ତ ମଣ୍ଡଳରୁ ଅଲଗା କରିବାରେ ସାହାଯ୍ୟ କରିଥିଲେ ।

ଯମଗର୍ତ୍ତମଣ୍ଡଳରୁ ବଣାଇ ଅଲଗା ହୋଇ ଉଦିତ ବରାହଙ୍କ ଅଧୀନରେ ଶାସିତ ହେଲା ଏବଂ ଉଦିତ ବରାହ ଭୌମକରବଂଶର ରାଣକ ହୋଇ ରହିଲେ । ଧରଣୀ ବରାହ ଓ ଉଦିତ ବରାହ ସମ୍ଭବତଃ ରାଜସ୍ଥାନର ଚିତୋର ଅଞ୍ଚଳରୁ ବିତାଡିତ ହୋଇ ଖିଜ୍ଜିଙ୍ଗକୋଟା (ଆଧୁନିକ ଖିଚିଙ୍ଗ) ର ଭଞ୍ଜରାଜା ରାଣଭଞ୍ଜ (ଖ୍ରୀ ୯୨୪-୯୨୯) ଓ ରାଜାଭଞ୍ଜଙ୍କ ଠାରେ ଆଶ୍ରୟ ନେଇଥିଲେ । ଖିଚିଙ୍ଗ ଯାଦୁଘରଠାରେ ଥିବା ଅବଲୋକିତେଶ୍ୱର ମୂର୍ତ୍ତିର ପାଦଦେଶରେ ଥିବା ଶିଳାଲିପିରୁ ଜଣାଯାଏ ଯେ, ଧରଣୀ ବରାହ ଏହି ଅବଲୋକିତେଶ୍ୱର ମୂର୍ତ୍ତି ଭଞ୍ଜ ରାଜା ରାଜଭଞ୍ଜଙ୍କ ରାଜତ୍ୱରେ ଦାନ କରିଥିଲେ । * ବଣାଇଠାରୁ ପ୍ରାପ୍ତ

* *Histrory and Culture of Khiggingakota by Arjun Joshi.*

ଉଦୟ ବରାହଙ୍କ ତାମ୍ର ଶାସନରୁ ଜଣାଯାଏ, ଉଦିତ୍ ବରାହ ପ୍ରଥମେ ବଣାଇ ରାଜ୍ୟ ସ୍ଥାପନ କରିଥିଲେ ।

ଉଦିତ ବରାହ



ତେଜ ବରାହ



ଉଦୟ ବରାହ

ଉଦୟ ବରାହ ଅପୁତ୍ରିକ ଥିବାରୁ କିମ୍ବା ସୋମବଂଶୀ ରାଜାମାନେ ଭୌମକର ଶାସନ ଅଧିକାର କଲାପରେ ଏମାନେ ତାମ୍ରଲିପ୍ତ ଅଞ୍ଚଳରୁ ପଳାଇଯାଇଥିଲେ ।

ଯମଗର୍ତ୍ତ ଶାସନରୁ ଶ୍ରୀପୁଞ୍ଜ ବାମଣ୍ଡା ମଣ୍ଡଳ ଅଲଗା କରି ଶାସନ କଲେ ଏବଂ ଶ୍ରୀପୁଞ୍ଜ ସୋମବଂଶୀ ରାଜା ମହାଭବଗୁପ୍ତ ଭୀମ ରଥ (ଖ୍ରୀ ୯୦୫-୯୬୦)ଙ୍କର ରାଣକ ରହି ବାମଣ୍ଡାପଟି ଶାସନ କଲେ । ସମ୍ବଲପୁର ନିକଟବର୍ତ୍ତୀ ମହାନଦୀର ଉପନଦୀ ମାଳତୀଯୋର କୂଳବର୍ତ୍ତୀ କୁଦୋପାଲିରୁ ମିଳିଥିବା ଲୋଇସରା ତାମ୍ର ଶାସନରେ ରାଣକ ଶ୍ରୀପୁଞ୍ଜ ବୋତାଙ୍କର ପୁତ୍ର ମହାଭବଗୁପ୍ତଙ୍କର ରାଣକ ଏବଂ ସେ ବାମଣ୍ଡା ପଟ୍ଟୀ ଶାସନ କରୁଥିବା ଜଣାଯାଏ । ବାମଣ୍ଡାପଟ୍ଟୀ ବା ବାମଣ୍ଡା ମଣ୍ଡଳ ସୁନ୍ଦରଗଡ ଜିଲ୍ଲାର କିଛି ଅଂଶ ଓ ବାମଣ୍ଡାକୁ ନେଇ ଗଠିତ ହୋଇଥିବା ଜଣାଯାଏ ।

ରେଢ଼ାଖୋଲର ପୂର୍ବସୀମା କଟେସର ଘାଟୀଠାରୁ ପାଲଲହଡାର ସୀମା ବାମଣ୍ଡା ରାଜ୍ୟ ମଧ୍ୟରେ କୁଆ ଉଡିଯିବା ଦୂରତ୍ୱରେ ମାତ୍ର ୨୪ କିଲୋମିଟର । ରେଢ଼ାଖୋଲର ବସାଲୋଇଠାରୁ ଏକ ପ୍ରାଚୀନ ପଥ ବାମଣ୍ଡାର ପୋଇପାଣି, ଗୁଡମାଳ, ଉତୁଣିଆ, ବାଘବରଠାରୁ ବ୍ରାହ୍ମଣୀ କୂଳରେ ନଇକୂଳ ପର୍ଯ୍ୟନ୍ତ ଯାଇଛି ଓ ଅନ୍ୟରାସ୍ତା ବାଘବର ଠାରୁ ରଞ୍ଜନା ଦେଇ ଗୋହୀରା ନଦୀ ଓ ବ୍ରାହ୍ମଣୀର ସଙ୍ଗମସ୍ଥଳ ଗୋଗୁଆଦେଇ ପାଲଲହଡା ସୀମା ପର୍ଯ୍ୟନ୍ତ ଯାଇଛି । ରେଢ଼ାଖୋଲ ଟିକିରା ନଦୀଠାରୁ ବ୍ରାହ୍ମଣୀ ନଦୀ ମଧ୍ୟରେ ଟିକିରାର ଉପନଦୀ ଦୁଇଟି ନାଳ ହିଞ୍ଜଳୀଯୋର ଏବଂ ଚିଲାଣ୍ଟୀଯୋର ପାରିହେବାକୁ ପଡେ । ଏହି ପଥ ଉତ୍ତରରେ ଗୋହୀରାନାଳ ଓ ଦକ୍ଷିଣରେ ଟିକିରା ନାଳ ମଧ୍ୟରେ ଏକ ପାର୍ବତ୍ୟ ଉପତ୍ୟକା ମଧ୍ୟରେ ଅବସ୍ଥିତ । ରେଢ଼ାଖୋଲ କଟାସର ଘାଟୀ ଠାରୁ ଉତ୍ତରରେ ରିଆମାଳ ଓ ବାମଣ୍ଡାକୁ ଦକ୍ଷିଣପୂର୍ବରେ ସରପାଳଦେଇ ତାଳଚେରକୁ ରାସ୍ତା ଥିଲା । ଏହିସବୁ ଅଞ୍ଚଳ ଦେଇ ଯମଗର୍ତ୍ତ ମଣ୍ଡଳର ରାଜଧାନୀରୁ ଶାସନ କରାଯାଉଥିଲା । ଯମଗର୍ତ୍ତ ମଣ୍ଡଳ ଭାଗ ହେଲାପରେ ଏହି ଅଞ୍ଚଳ ତଥା ରେଢ଼ାଖୋଲ ସହ ବାମଣ୍ଡା ପଟି ମଧ୍ୟରେ ରହି ବୋତାଙ୍କ ପୁତ୍ର ରାଣକ ଶ୍ରୀପୁଞ୍ଜଙ୍କ ଦ୍ୱାରା ଶାସିତ ହେଲା ।

ମହାଭବଗୁପ୍ତ ଭୀମରଥଙ୍କ ପରେ ତାଙ୍କ ପୁତ୍ର ମହାଶିବଗୁପ୍ତ ଧର୍ମରଥ ରାଜା ହେଲେ । ଧର୍ମରଥଙ୍କର ପୁତ୍ର ନଥିବାରୁ ତାଙ୍କ ଭାଇ ନଘୁଷ ରାଜା ହେଲେ । ନଘୁଷ ଯଯାତିନଗରରେ ରାଜା ଥିଲା ବେଳେ ତାଙ୍କର ବିମାତା ଭାଇ ଇନ୍ଦ୍ରରଥ କଳିଙ୍ଗର ରାଜ୍ୟପାଳ ଥିଲେ । ନଘୁଷ ନିଜ କାର୍ଯ୍ୟ ପାଇଁ ଅପ୍ରିୟ ହେବାରୁ ଇନ୍ଦ୍ରରଥ ନଘୁଷଙ୍କୁ ଓ ତାଙ୍କର ଜ୍ଜା ଅଭିମନ୍ୟୁଙ୍କୁ ରାଜଧାନୀରେ ହତ୍ୟା କଲେ । ଅଭିମନ୍ୟୁଙ୍କ ପୁତ୍ର ଚଣ୍ଡୀହର ଯଯାତି ରାଜଧାନୀରୁ ପଳାଇଗଲେ । ଇନ୍ଦ୍ର ରଥ (ଖ୍ରୀ ୧୦୦୦-୧୦୨୩) ରାଜା ହେଲେ । ଇନ୍ଦ୍ରରଥ ତାଙ୍କ ନିଜ ରାଜଧାନୀରେ ରାଜେନ୍ଦ୍ରଚୋଳଙ୍କ (ଖ୍ରୀ ୧୦୨୩) ଦ୍ୱାରା ନିହତ ହେଲେ । ଚଣ୍ଡୀହର ଯଯାତି(ଦ୍ୱିତୀୟ) (ଖ୍ରୀ ୧୦୨୩-୪୦) କଳିଙ୍ଗ, କୋଶଳ ଓ ଉତ୍କଳର ରାଜା ହେଲେ । ସେ ମହାଶିବଗୁପ୍ତ ଯଯାତି (୨ୟ) ରୂପେ ଶାସନ କଲେ । ସେ କୋଶଳକୁ ଅଲଗା କରି ନିଜ ଭ୍ରାତା ଅଭିମନ୍ୟୁ(୨ୟ)ଙ୍କୁ ଏହାର ଶାସନ ଭାର ଦେଲେ । ଚଣ୍ଡୀହର ଯଯାତିଙ୍କ ପରେ ତାଙ୍କ ପୁତ୍ର ଉଦ୍ୟୋତ କେଶରୀ (ଖ୍ରୀ ୧୦୪୦-୧୦୬୫) ରାଜା ହେଲେ । ସେ କୋଶଳରେ ଅଭିମନ୍ୟୁଙ୍କ ପରିବର୍ତ୍ତେ ତାଙ୍କ ପୁତ୍ର କୁମାର ସୋମେଶ୍ୱରଙ୍କୁ ରାଜ୍ୟପାଳ କଲେ । ସୋମବଂଶୀ ରାଜା ଇନ୍ଦ୍ରରଥଙ୍କୁ ରାଜେନ୍ଦ୍ରଚୋଳ ତାଙ୍କ ରାଜଧାନୀ ଯଯାତି ନଗର ଠାରେ ନିହତ କରିଥିଲେ । ଐତିହାସିକ ନବୀନକୁମାର ସାହୁ ଯଯାତିନଗରକୁ ଆଧୁନିକ ''ଜଗତି'' ବୌଦଠାରୁ ମହାନଦୀର ଦକ୍ଷିଣ କୂଳରେ ପଶ୍ଚିମକୁ ୧୨ କିଲୋମିଟର ଠାରେ ଚିହ୍ନିତ କରିଛନ୍ତି । ଏହି ରାଜଧାନୀ ଠାରେ ଚଣ୍ଡୀହର ଯଯାତି କଳିଙ୍ଗ, କୋଶଳ, ଉତ୍କଳର ରାଜା ହୋଇଛନ୍ତି । ସମ୍ଭବତଃ ରାଜେନ୍ଦ୍ରଚୋଳ ଯଯାତି କେଶରୀଙ୍କ ସହଯୋଗରେ ଆସିଥିଲେ ଏବଂ କୋଶଳ, ଉଡ୍ର, ଉତ୍କଳ ମଧରେ ଅବାଧରେ ଗଙ୍ଗାନଦୀ ପର୍ଯ୍ୟନ୍ତ ଯାଇଥିଲେ ।

ଓଡ଼ିଶାର ପ୍ରତ୍ନତତ୍ତ୍ୱ ପୁସ୍ତକରେ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ତାଞ୍ଜୋରର ରାଜା ରାଜେନ୍ଦ୍ରଚୋଳ (ଖ୍ରୀ ୧୦୨୩-୨୫) ଙ୍କର ଗଙ୍ଗା ଅଭିଯାନ ବିଷୟ ବର୍ଣ୍ଣନା କରିଛନ୍ତି । ସେ ଜଗତି ଠାରୁ ବୌଦଠାରେ ମହାନଦୀ ପାର ହୋଇ କିଆକଟା, ରେଢ଼ାଖୋଲ, ନାକଟି ଦେଉଳ, ଦେବଗଡରୁ ବଣାଇ ରାଜ୍ୟ ଦେଇ ମୟୂରଭଞ୍ଜ ରାଜ୍ୟର କେନ୍ଦୁଝର, ଖିଚିଙ୍ଗ, ଯଶୀପୁର ଦେଇ ଯେଉଁବାଟେ ଛଅ ନମ୍ବର ଜାତୀୟ ରାଜପଥ ଯାଇଛି ସେହି ବାଟେ ଗଙ୍ଗା କୂଳବର୍ତ୍ତୀ ବଙ୍ଗ ପର୍ଯ୍ୟନ୍ତ ଯାଇଥିଲେ । ଏହି ଅଞ୍ଚଳ ତାମିଲ ଲିପିରେ ଦୁର୍ଗମ ଉଡ୍ର ବିଜୟ ବୋଲି ବର୍ଣ୍ଣିତ ହୋଇଛି । ଉଡ୍ର ପରେ ଦଣ୍ଡଭୁକ୍ତି ରାଜ୍ୟ ଓ ଦକ୍ଷିଣ ରାଢ଼ ରାଜ୍ୟ ମଧରେ ଯାଇ ବଙ୍ଗଳା ଦେଶର ଗୋବିନ୍ଦ ଚନ୍ଦ୍ରଙ୍କୁ ପରାସ୍ତ କରିଥିଲେ । ତାପରେ ଉତ୍ତରରାଢ଼ ରାଜ୍ୟର ଏକ ପାଳ ବଂଶୀୟ ରାଜାଙ୍କୁ ପରାସ୍ତ କରି ଗଙ୍ଗାନଦୀର ଜଳଘେନି ପୂର୍ବୋକ୍ତ ପଥରେ ଅର୍ଥାତ୍ ଏହି ରେଢ଼ାଖୋଲ ରାଜ୍ୟ ମଧ ଦେଇ ଫେରି ଯାଇଥିଲେ ।

ଚଣ୍ଡୀହର ଯଯାତି ଓ ପରେ ଉଦ୍ୟୋତ କେଶରୀଙ୍କ ସମୟରେ ଅଭିମନ୍ୟୁ(୨ୟ) ଏବଂ ଜନ୍ମେଜୟ (୨ୟ) ସମୟରେ କୁମାର ସୋମେଶ୍ୱର କୋଶଳର ଶାସନକର୍ତ୍ତା ହେଲେ । ଅଭିମନ୍ୟୁ ଓ ସୋମେଶ୍ୱରଙ୍କ ସମୟରେ ସୋନପୁରକୁ ପଶ୍ଚିମ ଲଙ୍କା କୁହାଯାଉଥିଲା । କୁମାର

ସୋମେଶ୍ୱରଙ୍କ ପରେ ଜନ୍ମେଜୟ (୨ୟ)ଙ୍କ ପୁତ୍ର ଧର୍ମରଥ କୋଶଳରେ ସୋମବଂଶର ଶେଷ ଶାସକ ଥିଲେ । ସେ ଜନ୍ମେଜୟ (୨ୟ) (ଖ୍ରୀ ୧୦୬୫-୧୦୮୦)ଙ୍କ ପଞ୍ଚମ ବର୍ଷରେ ନୂଆ ପାଟଣା ତାମ୍ର ଶାସନ ଦାନ କରିଥିଲେ । ସୋମବଂଶୀ ରାଜା କର୍ଣ୍ଣଦେବଙ୍କ (ଖ୍ରୀ ୧୦୯୦-୧୧୧୮) ରତ୍ନ ଗିରି ତାମ୍ରଶାସନରୁ ଜଣାଯାଏ ଜନ୍ମେଜୟ(୨ୟ) ସହ ଚିଣ୍ଡକ ନାଗରାଜା ସୋମେଶ୍ୱରଙ୍କ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ (ଖ୍ରୀ ୧୦୭୦) ଯୁବରାଜ ଧର୍ମରଥ ନିହତ ହେବାରୁ ସୋମବଂଶୀ ଶାସନ ସୋନପୁର କୋଶଳରୁ ଅବସାନ ଘଟିଥିଲା ।•

ଖ୍ରୀ ୧୦୭୦ରେ ତେଲୁଗୁଚୋଡ ରାଜା ଯଶୋରାଜଦେବ (୧ମ) ସୋନପୁର କୋଶଳର ରାଣକ ହେଲେ । ସେ ଚିଣ୍ଡକ ନାଗରାଜା ସୋମେଶ୍ୱର ଦେବଙ୍କ ସେନାପତି ହୋଇ ସୋନପୁରରେ ସୋମବଂଶୀ ଶାସକଙ୍କୁ ଯୁଦ୍ଧରେ ନିହତ କରି ରାଜା ହୋଇଥିଲେ । କୋଶଳର ତେଲୁଗୁଚୋଡ ଶାସକଙ୍କର ତିନୋଟି ତାମ୍ର ଶାସନ (୧) କୁମାରୀ ସିଂହା ତାମ୍ରଶାସନ (୨) ପାଟଣା ଯାଦୁଘର ତାମ୍ର ଶାସନ (୩) ମହଦା ତାମ୍ର ଶାସନରୁ ସେମାନଙ୍କର ବଂଶାବଳୀ ଏହି ରୂପେ ଜଣାଯାଏ ।

ଚ଼ମଲ ରାଜ

(୧) ଯଶୋରାଜ (ପ୍ରଥମ)



(୨) ସୋମେଶ୍ୱର (୧ମ) - ଚନ୍ଦ୍ରାଦିତ୍ୟ (ଆମଗ୍ରାମର ମଣ୍ଡଳେଶ୍ୱର)



(୩) ଧାରଲ୍ଲ ଦେବ
ବା
ଯଶୋରାଜ ଦେବ (୨ୟ)



(୪) ସୋମେଶ୍ୱର ଦେବ (୨ୟ)
(ମହଦା ତାମ୍ର ଶାସନ ଦାତା)

(୫) ଯଶୋରାଜ ଦେବ (୩ୟ)



(୬) ସୋମେଶ୍ୱର ଦେବ (୩ୟ)
(ପାଟଣା ମ୍ୟୁଜିୟମ ଓ କୁମାରୀ ସିଂହା ତାମ୍ର ଶାସନ ଦାତା)

(ପାଶ୍ୱରେ କ୍ରମିକ କ୍ରମରେ ସିଂହାସନ ଆରୋହଣ ଦର୍ଶାଯାଇଛି)

ଖ୍ରୀ ୧୧୧୪ରେ ରତନପୁର କଳାଚୁରୀ ରାଜା ଜାଜଲ୍ଲଦେବ (୧ମ)ଙ୍କ ଶିଳା ଲେଖରୁ ଜଣାଯାଏ ଯେ ସେ ଜନୈକ ସୋମେଶ୍ୱରଙ୍କୁ ବନ୍ଦୀକରି ଥିଲେ ଏବଂ କୋଶଳ ଓ

• *ସୋନପୁର ଇତିହାସ (ପୃଷ୍ଠା - ୫୦, ପ୍ରଥମ ଖଣ୍ଡ)*

ଅନ୍ୟାନ୍ୟ ମଣ୍ଡଳରୁ ରାଜସ୍ୱ ସଂଗ୍ରହ କରିଥିଲେ । ସୋନପୁରର ମହାମଣ୍ଡଳେଶ୍ୱର ଭୁଜବଳ ଜାଜଲଦେବଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ବୋଲି ବିଳାସପୁରର ଖରୋଦ ଶିଳା ଲେଖରେ ଉଲ୍ଲେଖ ଅଛି । ସେ ଭୁଜବଳ ତେଲଗୁ ଚୋଡରାଜା ସୋମେଶ୍ୱର ଦେବ (୩ୟ) ଅଟନ୍ତି । ତେଣୁ ସୋନପୁର କୋଶଳ ଖ୍ରୀ ୧୧୧୩ ଠାରୁ କଳାଚୁରୀମାନଙ୍କ ରତନପୁର ରାଜ୍ୟରେ ମିଶି ରହିଥିଲା । ସେତେବେଳେ କଳିଙ୍ଗ ରାଜା ଉତ୍କଳ ଜୟକରି ସାରିଥିଲେ ବା ଓଡ଼ିଶାର ଗଜପତି ଥିଲେ ଅନନ୍ତ ବର୍ମା ଚୋଡଗଙ୍ଗ ଦେବ ।

ରତନପୁର କଳାଚୁରୀ ରାଜାମାନେ ଛତିଶଗଡ ବା ବିଳାସପୁର– ରାୟପୁର ଜିଲ୍ଲା ମଧ୍ୟରେ ସୀମାବଦ୍ଧ ଥିଲେ । ଜାଜଲଦେବ ସେଥିରେ ସମ୍ବଲପୁର-ସୋନପୁର ଅଞ୍ଚଳ ମିଶାଇଥିଲେ । ରତନପୁର ତୁଳନାରେ ଓଡ଼ିଶାର ଗଜପତିମାନଙ୍କର କ୍ଷମତା ଅତ୍ୟନ୍ତ ଉଚ୍ଚରେ ଥିଲା । ହେଲେ ହେଁ ଗଜପତି ଦକ୍ଷିଣାତ୍ୟ ଓ ବଙ୍ଗଳା ଯୁଦ୍ଧରେ ଅତ୍ୟନ୍ତ ବ୍ୟସ୍ତ ରହୁଥିଲେ । ସମ୍ବଲପୁର କୋଶଳର ରକ୍ଷା ବା ପୁନରୁଦ୍ଧାର ପାଇଁ ପ୍ରୟାସ କରୁନଥିଲେ । ତାଙ୍କର ସେନା ତିନି ଭାଗରେ ବିଭକ୍ତ ହୋଇଥିଲେ ।

ଖରୋଦ ଶିଳାଲେଖରୁ ଜଣାଯାଏ ଯେ, କଳାଚୁରୀ ରାଜା ଜଜଲଦେବଙ୍କ ନାତି ରତ୍ନଦେବ(୨ୟ) ଚୋଡଗଙ୍ଗଙ୍କୁ ପରାସ୍ତ କରିଥିଲେ । କଳାଚୁରୀ-ଗଙ୍ଗ ଯୁଦ୍ଧ ବହୁଦିନ ଧରି ଚାଲିଥିଲା । ଗଙ୍ଗ ବଂଶର ଗଜପତି ରାଜା ଅନଙ୍ଗ ଭୀମଦେବ (୩ୟ)ଙ୍କ ପ୍ରବୀଣ ସେନାପତି ଓ ମନ୍ତ୍ରୀ ''ବିଷ୍ଣୁ'' ରତ୍ନପୁରରାଜାଙ୍କୁ ବିନ୍ଧ୍ୟପର୍ବତ ତଳେ ଭେଟିଥିଲେ । ରତ୍ନପୁର ରାଜା ଯୁଦ୍ଧରେ ପରାସ୍ତ ହେଲେ । ଖ୍ରୀ ୧୨୧୯ଠାରୁ କୋଶଳ ଓଡ଼ିଶାର ଅନ୍ତର୍ଗତ ହେଲା ।* ରତ୍ନପୁରର ଯୁବରାଜ ପରମାର୍ଦ୍ଦୀଦେବ ଗଜପତି ଅନଙ୍ଗଭୀମ ଦେବଙ୍କ କନ୍ୟା ଚନ୍ଦ୍ରିକାଦେବୀଙ୍କୁ ବିବାହ କରିଥିଲେ । ସବୁଦିନ ପାଇଁ ଗଙ୍ଗ-କଳାଚୁରୀ ଯୁଦ୍ଧର ଅବସାନ ଘଟିଲା । ପରମାର୍ଦ୍ଦୀ ଦେବ ଗଜପତି ନରସିଂହ ଦେବଙ୍କ ଦ୍ୱାରା ଲକ୍ଷ୍ମଣୌତି (ବଙ୍ଗଳା) ଯୁଦ୍ଧରେ ସେନାପତି ରୂପେ ନିଯୁକ୍ତ ହୋଇଥିଲେ । ଭଞ୍ଜବଂଶ ଖିଞ୍ଜିଙ୍ଗାକୋଟା, ବାମନଘାଟି (ମୟୂରଭଞ୍ଜ), ଅଙ୍ଗୁଳକ ପଟନ ବା ଅନୁଗୁଳକ ପଉନ (ଅନୁଗୋଳ) ବୌଦ ଓ ଘୁମୁସର (ଖେମଣ୍ଡୀ) ରେ ଶାସକ ଥିଲେ । ଏମାନେ ଗଜପତି ରାଜାଙ୍କର ସାମନ୍ତ ଥିଲେ । ଗଙ୍ଗ-କଳାଚରୀ ଯୁଦ୍ଧରେ ଗଙ୍ଗମାନଙ୍କୁ ସାହାଯ୍ୟ କରୁଥିବାରୁ ଜନୈକ ସୋମେଶ୍ୱର ଦେବ ବର୍ମା ଭଞ୍ଜମାନଙ୍କ ଠାରୁ ବୌଦ-ସୋନପୁର ଅଞ୍ଚଳ ଛଡାଇ ନେଲେ । ସୋମେଶ୍ୱରଦେବ ବର୍ମାଙ୍କ ନାତି ଯୋଗେଶ୍ୱର ଦେବ ବର୍ମା ସୋନପୁର ଓ ବୌଦ ଉଭୟର ଶାସନକର୍ତ୍ତା (ମଣ୍ଡଳେଶ୍ୱର) ଥିଲେ । * ମହଦା ତାମ୍ର -ଶାସନରୁ ସୋମେଶ୍ୱର ଦେବ ବର୍ମାଙ୍କ ପରିଚୟ ଜଣାଯାଏ ।

---

** Chateswar temple inscription 1220 AD- History of Orissa N.K. Sahu. etc*

** Mahada Plate Epigraphia Indica Vol - XII, p. 218-221(ସମ୍ବଲପୁର ଇତିହାସ)*

ସୋମେଶ୍ୱର ଦେବ ବର୍ମା (୧ମ)



ଧାରଣ ଦେବ ବର୍ମା



ଯୋଗେଶ୍ୱର ଦେବ ବର୍ମା



ସୋମେଶ୍ୱର ଦେବ ବର୍ମା (୨ୟ)

ଏହି ବର୍ମାବଂଶୀ ସୂର୍ଯ୍ୟବଂଶ କ୍ଷତ୍ରୀୟ ଥିଲେ । ସେମାନେ ଅଯୋଧ୍ୟାରୁ ଆସିଥିଲେ । ହୈହୟବଂଶ (କଳାଚୁରୀ) ସୋନପୁର ଅଧିକାର କଲାପରେ ରତ୍ନପୁରର ଶାସକ ଏହି ବର୍ମାବଂଶକୁ ସୋନପୁର ମଣ୍ଡଳେଶ୍ୱର ରୂପେ ନିଯୁକ୍ତ କରିଥିଲେ । ଜାଜଲ ଦେବଙ୍କ ସୋନପୁର ବିଜୟଠାରୁ ଓଡ଼ିଶା ଗଜପତି ଅନଙ୍ଗ ଭୀମଦେବ (୩ୟ)ଙ୍କ ସୋନପୁର ପୁନଃଅଧିକାର ପର୍ଯ୍ୟନ୍ତ (ଖ୍ରୀ ୧୧୧୩-୧୨୧୯) ଏହି ବର୍ମା ବଂଶ ସୋନପୁର-ପାଟଣା-ସମ୍ବଲପୁର ଅଞ୍ଚଳ ଶାସନ କରିଥିଲେ । ରାଣୀପୁର-ଝରିଆର ସୋମେଶ୍ୱର ଦେଉଳ ଶିଳା ଲିପିରୁ ଜଣାଯାଏ ଯେ, ଗଜପତି ରାଜାମାନେ ଏମାନଙ୍କୁ ଶାସନ ଅଧିକାରରୁ ବଞ୍ଚିତ କରିଥିଲେ । ଗଙ୍ଗ ଗଜପତି -କଳାଚୁରୀ ଯୁଦ୍ଧ ବିବାଦ ଶତାଧିକ ବର୍ଷ ଚାଲିଥିଲା ବେଳେ ସମ୍ବଲପୁର କୋଶଳରେ ଅରାଜକତା ଲାଗି ରହିବାରୁ ସାମନ୍ତ ବା ଉପସାମନ୍ତମାନେ ଏକ ପ୍ରକାର ପୂର୍ଣ୍ଣ ସ୍ୱାଧୀନତା ଉପଭୋଗ କରୁଥିଲେ ।

ଗଙ୍ଗ ବଂଶର ଅନଙ୍ଗଭୀମ ଦେବ (୩ୟ)ଙ୍କ ଠାରୁ ଚୌହାନ ବଂଶର ପ୍ରତିଷ୍ଠାତା ରମେଇଦେବଙ୍କ ପର୍ଯ୍ୟନ୍ତ ସମ୍ବଲପୁର ସୋନପୁର ଅଞ୍ଚଳର ରାଣକମାନଙ୍କୁ ଗଙ୍ଗ ନରପତିମାନେ ନିଯୁକ୍ତ କରୁଥିଲେ । ଶ୍ରୀ ରାମଚନ୍ଦ୍ର ମଲ୍ଲିକ୍‌ଙ୍କ ‘‘ସଂକ୍ଷିପ୍ତ କୋଶଳ ଇତିହାସ’’ ଅନୁସାରେ ରାମେଶ୍ୱର ଦେବ, ହରିନାଥ ଦେବ, କୃତ୍ତିବାସ ଦେବ, କୃତ୍ତିବାସଙ୍କ ରାଣୀ ହେମନ୍ତ-କୁମାରୀ ଏହି ସମୟରେ ପାଟଣା ଅଞ୍ଚଳରେ ରାଜତ୍ୱ କରୁଥିଲେ । ରାମେଶ୍ୱରଙ୍କ ରାଜଧାନୀ ଥିଲା ତ୍ରିତଳଗଡ ବା ଟିଟିଲାଗଡ ଓ ହରିନାଥ ଦେବଙ୍କ ରାଜଧାନୀ ଥିଲା ରାଣୀପୁର ଝରିଆ । ହରିନାଥ ରାଣୀପୁର ଛାଡ଼ି ପାଟଣାକୁ ରାଜଧାନୀ ଉଠାଇ ନେଇଥିଲେ । ତାଙ୍କ ପରେ କୃତ୍ତିବାସ ଅପୁତ୍ରିକ ହୋଇ ମୃତ୍ୟୁ ବରଣ କରିବାରୁ ରାଣୀ ହେମନ୍ତ କୁମାରୀ ଆଠଜଣ ମହଲ୍ଲିକଙ୍କ ସାହାଯ୍ୟରେ ପାଟଣା ଶାସନ କରୁଥିଲେ । ରାଣୀଙ୍କ ମୃତ୍ୟୁପରେ ଅଷ୍ଟ ମହଲ୍ଲିକମଣ୍ଡଳ ଚାଳିଶବର୍ଷ ପର୍ଯ୍ୟନ୍ତ ଶାସନ କାର୍ଯ୍ୟ କରିଥିଲେ । କିମ୍ବଦନ୍ତୀ କହେ ଯେ, ରାଣୀଙ୍କ ମୃତ୍ୟୁପରେ ଗୋଟିଏ ଲେମ୍ବୁକୁ ରାଣକ ବୋଲି କଳ୍ପନା କରି ମହଲ୍ଲିକ

ମଣ୍ଡଳ◆ ଶାସନ କାର୍ଯ୍ୟ ଚଳାଉଥିଲେ । ସେଥିପାଇଁ କୋଶଳଖଣ୍ଡରେ "ଆଠ ମହଲ୍ଲିକେ ଲେମ୍ବୁରାଜା" କିମ୍ବଦନ୍ତୀ ଏ ପର୍ଯ୍ୟନ୍ତ ଜନମୁଖରେ ପ୍ରଚଳିତ ଅଛି । ଏହି ମହଲ୍ଲିକ ଶାସନ ସମୟରେ ଖ୍ରୀ ୧୩୫୫ରେ ଚୌହାନ ରାଜା ରମାଇଦେଓ ପାଟଣା ରାଜ୍ୟ ଶାସନ ଅଧିକାର କରିଥିଲେ ।

ଗଙ୍ଗବଂଶ ରାଜା ଅନଙ୍ଗ ଭୀମଦେବ (୩ୟ) (ଖ୍ରୀ ୧୨୧୧-୧୨୩୮)



ନରସିଂହ ଦେବ (୧ମ) (୧୨୩୮ - ୧୨୬୪)



ଭାନୁ ଦେବ (୧ମ) (୧୨୬୪-୧୨୭୮)



ନରସିଂହ ଦେବ (୨ୟ) (୧୨୭୮-୧୩୦୬)



ଭାନୁଦେବ (୨ୟ) (୧୩୦୬-୧୩୨୮)



ନରସିଂହ ଦେବ (୩ୟ) (୧୩୨୮ - ୧୩୫୨)



ଭାନୁଦେବ (୩ୟ) (୧୩୫୨ - ୧୩୭୮)

ଭାନୁଦେବ (୩ୟ) ପାଟଣାଅଞ୍ଚଳରେ ଅନ୍ୟାନ୍ୟ ମଣ୍ଡଳ ବା ରାଣକମାନଙ୍କ ଉପରେ ପ୍ରଭାବ ବିସ୍ତାର କରି ପାରିଲେ ନାହିଁ । ବାସ୍ତବ ଦୃଷ୍ଟିରେ ସୋନପୁର ଏକ ମଣ୍ଡଳରେ ପରିଣତ ହୋଇଥିଲା ଏବଂ ରାଣକ - ମହଲ୍ଲିକ ଶାସନ ଗଠିତ ହୋଇଥିଲା ପାଟଣା, ବୌଦ, ଆଠମଲ୍ଲିକରେ । ରମାଇଦେବ ସୋନପୁର, ବୌଦ ଓ ଆଠମଲ୍ଲିକ ମଣ୍ଡଳମାନ ମିଶାଇ ସେଗୁଡ଼ିକୁ କରଦ ରାଜ୍ୟରେ ପରିଣତ କଲେ ।

ବାମଣ୍ଡା ରାଜବଂଶ ମାଦଳାରୁ ଜଣାଯାଏ ହଟ ହମିର ଦେବ ଗଙ୍ଗବଂଶର ଜଣେ ରାଣକ ଥିଲେ । ◆ ସେ ଗଙ୍ଗବଂଶର ରକ୍ତ ସମ୍ପର୍କୀୟ ଥିଲେ । ରମେଇଦେବ ଯେତେବେଳେ ପାଟଣା ରାଜ ସିଂହାସନ ଅଧିକାର କଲେ, ସେତେବେଳେ ସେ ଏହି ଗଙ୍ଗରାଜ ହଟ

---

◆ *ପାଲି ଭାଷାରେ 'ମହଲ୍ଲିକ' ଶବ୍ଦର ଅର୍ଥ ବୃଦ୍ଧ ଓ ଜ୍ଞାନୀ । ଏମାନେ ପାଟଣାର ବିଭିନ୍ନ ଅଞ୍ଚଳ ବା ଗଡର ପ୍ରତିନିଧି ଥିଲେ । ପାଟଣାର ଆଠ ମଲ୍ଲିକ ଶାସନ ଗଣତନ୍ତ୍ରୀୟ ଶାସନ ଥିଲା - ସମ୍ବଲପୁର ଇତିହାସ - ଶିବ ପ୍ରସାଦ ଦାଶ ।*

◆ *ସମ୍ବଲପୁର ଗେଜେଟିଅରସ୍*

ହମିରଦେବଙ୍କୁ ନିହତ କରିଥିଲେ । ସମ୍ଭବତଃ ହଟ୍ଟ ହମିର ଦେବ ଜଣେ ମହଲ୍ଲିକ ଥିଲେ । ହମୀର ଦେବ ରାଜ୍ୟ ଅଧିକାର କଲାବେଳେ କେବଳ ଜଣେ ମହଲ୍ଲିକ ଚକ୍ରଧର ପାଣିଗ୍ରାହୀଙ୍କ ବ୍ୟତୀତ ଅନ୍ୟ ସପ୍ତ ମହଲ୍ଲିକଙ୍କୁ ନିହତ କରିଥିଲେ । ହଟ୍ଟ ହମିର ଦେବ ତ୍ରିତଳଗଡ ବା ଟିଟିଲାଗଡ ଅଞ୍ଚଳରେ ଜଣେ ମହଲ୍ଲିକ ଥିଲେ । ତାଙ୍କର ଏକମାତ୍ର ପୁତ୍ର ସରଳୁ ଦେବଙ୍କୁ ବାମଣ୍ଡା ଅଞ୍ଚଳ କଟଙ୍ଗପାଣିର ସୁନାକନ୍ଧ ଓ କାଳୀପଦରର କଚରୁ ଭୂୟାଁମାନେ ନେଇ ବାମଣ୍ଡାରେ ରାଜା କଲେ । ସମ୍ଭବତଃ ସେ ଗଙ୍ଗବଂଶର ରକ୍ତ ସମ୍ପର୍କୀୟ ହୋଇଥିବାରୁ ତାଙ୍କୁ ବାମଣ୍ଡାରେ ମାଣ୍ଡଳିକ ରୂପେ ଗଙ୍ଗ ଗଜପତି ତୃତୀୟ ଭାନୁଦେବ ସୁଯୋଗ ଦେଇଥିଲେ । ରେଢ଼ାଖୋଲ ବାମଣ୍ଡା ଅଧୀନରେ ସେତେବେଳେ ଥିଲା । ପ୍ରସଙ୍ଗ କ୍ରମେ ବାମଣ୍ଡା ରାଜବଂଶ ତାଲିକା ନିମ୍ନରେ ଦିଆଗଲା । ବାମଣ୍ଡା ରାଜବଂଶ :-



ରାମଚନ୍ଦ୍ର ଦେବ



ଦୁବଳା ଦେବ



ମୁଖୀ ଦେବ ।

ସରଜୁ ଦେବଙ୍କ ସମୟରେ ରେଢ଼ାଖୋଲ ଏକ ଜମିଦାରୀ ଥିଲା । ଏହି ସମୟରେ ପାଟଣା ରାଜା ରମେଇ ଦେବ (ଖ୍ରୀ ୧୩୫୫-୧୩୮୦) ଓ ତାଙ୍କ ପୁତ୍ର ମହଲିଙ୍ଗ ଦେବ (ଖ୍ରୀ ୧୩୮୦-୧୩୮୫) ପାଟଣା ଅଞ୍ଚଳରେ ଗଙ୍ଗବଂଶର ରାଣକ ରୂପେ ଶାସନ କରୁଥିଲେ । ମହାଲିଙ୍ଗ ଦେବଙ୍କ ପୁତ୍ର ବଚ୍ଛରାଜ ଦେବ ( ଖ୍ରୀ ୧୩୮୫ - ୧୪୧୦) ରାଜ୍ୟ ବିସ୍ତାର କରିବାରେ ମନବଳାଇ ଥିଲେ । ସେ ଗାଙ୍ଗପୁର, ବଣେଇ, ବାମଣ୍ଡା, ବଉଦ, ଖିମିଣ୍ଡି, ନନ୍ଦପୁର ଓ ବସ୍ତର ରାଜ୍ୟ ଜୟକଲେ ଏବଂ ସାମନ୍ତ ରାଜାମାନେ ତାଙ୍କ ବଶତା ସ୍ୱୀକାର କଲେ । ବାମଣ୍ଡାର ଗଙ୍ଗ ରାଜା ନାରାୟଣ ଦେବ ପ୍ରତିବର୍ଷ ଷୋଳଘର ହାତୀ ଦେବାକୁ ଚୁକ୍ତି ବଦ୍ଧ ହେଲେ ଏବଂ ରେଢ଼ାଖୋଲ ଜମିଦାରୀ ହରାଇଲେ । ରେଢ଼ାଖୋଲ ପାଟଣାରେ ମିଶିଲା ।

ମେଜର ଏଚ.ବି. ଇମ୍ପେ, ସମ୍ବଲପୁରର, ଡେପୁଟି କମିଶନର ସାହେବଙ୍କ ରିପୋଟ ପାଟଣା ତଥା ସମ୍ବଲପୁର ରାଜ୍ୟ ଦ୍ୱୟର ଧାରାବାହିକ ଇତିହାସ ରଚନା କରିବା ଦିଗରେ ଅୟମାରମ୍ଭ ମାତ୍ର । ବ୍ରିଟିଶ୍ ଲେଖକଙ୍କର ଏହା ସର୍ବ ପ୍ରଥମ ଉଦ୍ୟମ । ସେଥିରେ ସେ ଲେଖିଛନ୍ତି ପୃଥୀ ସିଂହ (ବଚ୍ଛରାଜ ଦେବ ) ବଣାଇ, ବାମଣ୍ଡା ଓ ଗାଙ୍ଗପୁର ନାମକ ତିନୋଟି ରାଜ୍ୟ ସରଗୁଜାଠାରୁ ଛଡାଇଆଣି ନିଜ ଅଧୀନସ୍ଥ କଲେ ଓ ବାମଣ୍ଡା ରାଜାଙ୍କ ଠାରୁ ରେଢ଼ାଖୋଲ ଓ ମହାନଦୀର ବାମତୀରରେ ଥିବା ସମ୍ବଲପୁର ଜିଲ୍ଲାର ଅଂଶ କାଢ଼ି ଆଣି ପାଟଣାରେ ମିଶାଇଲେ । ସେ ଲେଖିଛନ୍ତି :- "The Fourth Maharajah, Pirthee Singh Deo subjugated and made tribute to Patna, the three dependencies of Sirgooja, named Banaee, Gangapoor and Bamara, and annexed to Patana itself by dispossession from the Rajah of Bamra. The Zamidaree of Rehracole and so much of the lands (now) of Sumbulpore on the left bank of Mahanaddy, as were contained between Rehracole and Bamara to the east, Barmara and Gangapoor to the north, and the west by the river Eebe to its sudden bend west ward and from then by the line running south, to the spot at the extremity of the present city of Sumbulpore where now the jail bridge stands."*

* *Major Impeys account reprinted in Bolangir District Gazetters p. 64-65.*

ଏଥିରୁ ଜଣାଯାଏ ରେଢ଼ାଖୋଲ ସମେତ ସମ୍ବଲପୁର ସହର ଜେଲ ନିକଟସ୍ଥ ସୁରେନ୍ଦ୍ର ସାଇ ଛକ ନିକଟରେ ବହି ଯାଇଥିବା ନାଳ ଓ ଉତ୍ତରରେ ଇବନଦୀ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳ ପାଟଣାରେ ମିଶିଥିଲା ।

** ଚୌହାନ ବଂଶ (ପାଟଣା ରାଜ୍ୟ)

୧. ରମେଇ ଦେବ (ଖ୍ରୀ ୧୩୬୦ - ୧୩୮୫)

୨. ମହାଲିଙ୍ଗ ଦେବ (୧୩୮୫ - ୧୩୯୦)

୩. ବତ୍ସରାଜ ଦେବ (୧୩୯୦ - ୧୪୧୦)

୪. ବୈଜଳ ଦେବ (୧୪୧୦- ୧୪୩୦)

୫. ଭୋଜରାଜ ଦେବ (୧୪୩୦ -୧୪୫୫)

୬. ପ୍ରତାପରୁଦ୍ର ଦେବ (୧୪୫୫ - ୧୪୮୦)

୭. ଭୂପାଳ ଦେବ (୧ମ) (୧୪୮୦ - ୧୫୦୦)

୮. ବିକ୍ରମାଦିତ୍ୟ ଦେବ (୧ମ) ( ୧୫୦୦-୧୫୨୦)

୯. ବୈଜଳ ଦେବ (୨ୟ) (୧୫୨୦-୧୫୪୦)

୧୦. ବଜ୍ର ହୀରାଧର ଦେବ (୧୫୪୦ -୧୫୭୦)

୧୧. ନରସିଂହ ଦେବ (୧୫୭୦ - ୧୫୭୩)

ବଳରାମ ଦେବ (୧୫୭୦ - ୧୫୯୫) (ସମ୍ବଲପୁର ରାଜ୍ୟ ସ୍ଥାପନ)

ବତ୍ସରାଜ ଦେବଙ୍କ ଅଧିକୃତ ରାଜ୍ୟ ବୈଜଳ ଦେବ, ଭୋଜରାଜ ଦେବ, ପ୍ରତାପରୁଦ୍ରଦେବ, ଭୂପାଳ ଦେବ-୧, ବିକ୍ରମାଦିତ୍ୟ ଦେବ ଏବଂ ଦ୍ୱିତୀୟ ବୈଜଳ ଦେବଙ୍କ ପର୍ଯ୍ୟନ୍ତ ରହିଆସିଲା । ଦ୍ୱିତୀୟ ବୈଜଳ ଦେବଙ୍କ ସମୟରେ ଓଡ଼ିଶାର ଗଜପତି ରାଜା ପ୍ରତାପରୁଦ୍ର ଦେବଙ୍କ ସଙ୍ଗେ ବିଜୟନଗରର ରାଜା କୃଷ୍ଣ ଦେବ ରାୟଙ୍କ ସଙ୍ଗେ ବିଜୟନଗର ରାଜା କୃଷ୍ଣଦେବ ରାୟଙ୍କର ଯୁଦ୍ଧ ହେଲା । ସେଥିରେ ପ୍ରତାପରୁଦ୍ରଙ୍କ ପୁତ୍ର, କନ୍ୟା ଓ ରାଣୀ ବନ୍ଦୀ ହେଲେ । ସେତେବେଳ ପ୍ରତାପରୁଦ୍ର କୃଷ୍ଣଦେବ ରାୟଙ୍କ ସଙ୍ଗେ ଖ୍ରୀ ୧୫୧୯ରେ ଶାନ୍ତି ଚୁକ୍ତି କଲେ ।* ସେ ତାଙ୍କ କନ୍ୟାକୁ କୃଷ୍ଣ ଦେବ ରାୟଙ୍କୁ ବିଭା ଦେଲେ ଓ କୃଷ୍ଣାନଦୀ ଆରପାରିର ଅଞ୍ଚଳ ଯୌତୁକ ସ୍ୱରୂପ ଦେଲେ । ପ୍ରତାପରୁଦ୍ରଙ୍କ କନ୍ୟାଙ୍କର ଅବିଶ୍ୱାସ ଗୁଣଯୋଗୁଁ ଚତୁର୍ଥୀ ରାତିରେ କୃଷ୍ଣ ଦେବରାୟ ତାଙ୍କୁ ପରିତ୍ୟାଗ କରିଥିଲେ । ସେ କୁଡାପାହ ଜିଲ୍ଲାର କମବମ୍‌ରେ ବିରହ ଜୀବନ ଅତିବାହିତ କଲେ । ସେତେବେଳେ ତାଙ୍କ ପିତା ଓଡ଼ିଶାର ରାଜସ୍ୱରେ ସେଠାରେ ଏକ ବଡ ପୁଷ୍କରିଣୀ ଖୋଳାଇଥିଲେ ଓ

---

** *ବଲାଙ୍ଗୀର ଗେଜେଟିୟର ।*

* *The history of Gajapati Kings of Orissa - P.Mukherjee p.83,84*

ଏକ କ୍ଷୁଦ୍ର ରାଜଧାନୀ ପରି ଦୁର୍ଗଟିଏ ନିର୍ମାଣ କରି ସମସ୍ତ ଖର୍ଚ୍ଚ ବହନ କରୁଥିଲେ । ବସ୍ତର, ବୌଦ, ବାମଣ୍ଡା, ବଣାଇ, ଗାଙ୍ଗପୁର, ଫୁଲଝର, ବୃଢ଼ାସମ୍ଭର ଓ ବିନ୍ଦ୍ରା ନୂଆଗଡ ଠାରୁ କର ଆଦାୟ କରି ପାଟଣା ରାଜା ଏହି ଖର୍ଚ୍ଚ ତୁଲାଉଥିଲେ । **ଖ୍ରୀ ୧୫୨୯ରେ କୃଷ୍ଣ ଦେବ ରାୟଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଅଚ୍ୟୁତରାୟ ରାଜା ହେଲେ । ସେ କୃଷ୍ଣରାୟଙ୍କ ପରି ଶକ୍ତିଶାଳୀ ନଥିଲେ ।

ବୈଜଳ ଦେବ (୨ୟ)ଙ୍କ ପରେ ତାଙ୍କ ପୁତ୍ରବକ୍ର ହୀରାଧର ଦେବ (୧୫୪୦-୭୦) ପାଟଣାର ରାଜା ହେଲେ । ସେତେବେଳକୁ ଗଜପତି ରାଜା ପ୍ରତାପରୁଦ୍ରଙ୍କ ମୃତ୍ୟୁ ହୋଇଥିଲା । ଭୋଇବଂଶଙ୍କ ଶାସନ ଯୋଗୁଁ ରାଜ୍ୟରେ ଅସ୍ଥିରତା ଲାଗି ରହିଥିଲା ।

ସୂର୍ଯ୍ୟ ବଂଶ

କପିଳେନ୍ଦ୍ର ଦେବ (ଖ୍ରୀ ୧୪୩୫ - ୧୪୬୮)



ପୁରୁଷୋତ୍ତମ ଦେବ (୧୪୬୮ - ୧୪୯୭)



ପ୍ରତାପରୁଦ୍ର ଦେବ (୧୪୯୭ - ୧୫୩୩)



କାଳୁଆ ଦେବ (ରାମଚନ୍ଦ୍ର ଦେବ) (୧୫୩୩-୩୪) ୧୭ ମାସ ।



କଖାରୁଆ ଦେବ (ପୁରୁଷୋତ୍ତମ ଦେବ) ୧୫୩୪- ୩ ମାସ ।

ଭୋଇ ବଂଶ

ଗୋବିନ୍ଦ ବିଦ୍ୟାଧର (୧୫୩୪ - ୧୫୪୯)



ଚକ୍ର ପ୍ରତାପ (୧୫୪୯ - ୧୫୫୭)



ନରସିଂହ ଜେନା (୧୫୫୭ - ୫୮)



ମୁକୁନ୍ଦ ହରିଚନ୍ଦନ (୧୫୫୯ - ୧୫୬୮)

ପ୍ରତାପରୁଦ୍ରଙ୍କ ପରେ ମୁକୁନ୍ଦ ହରିଚନ୍ଦନଙ୍କ ପର୍ଯ୍ୟନ୍ତ ଦେଶରେ ଅସ୍ଥିରତା ଲାଗି ରହିଥିଲା । ହୀରାଧର ଦେବ ଗୋଲକୁଣ୍ଡା ରାଜାଙ୍କ ସହ ଯୁଦ୍ଧ କରିବା ପାଇଁ ଗଜପତି ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ସହିତ ମିଶି ଦାକ୍ଷିଣାତ୍ୟ ଯାଇଥିଲେ । ତାଙ୍କ ମୃତ୍ୟୁ ପୂର୍ବରୁ ସମ୍ଭବତଃ ରେଢ଼ାଖୋଲକୁ ବଣେଇ ରାଜା ଅଧିକାର କରି କଦମ୍ବ ବଂଶର ଜଗଦୀଶ୍ୱର ଦେଓଙ୍କୁ ରେଢ଼ାଖୋଲର ରାଜା କରିଥିଲେ ।

** *ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ, ପୃ - ୧୦୮ ।*

## ଚତୁର୍ଥ ପରିଚ୍ଛେଦ

# ରେଢ଼ାଖୋଲର ପ୍ରାକ୍ ଇତିହାସ

ଓଡ଼ିଶା ଶାବର ଦ୍ରାବିଡ ଓ ଆର୍ଯ୍ୟ ସଂସ୍କୃତିର ଦେବଭୂମି ରୂପେ ପ୍ରସିଦ୍ଧି ଲାଭ କରିଛି । ଭାରତର ଆଦିମ ଇତିହାସ କହିଲେ ଶବର ଇତିହାସକୁ ହିଁ ବୁଝାଏ, କାରଣ ଭାରତର ଆଦିମ ଆଗନ୍ତୁକମାନଙ୍କ ମଧ୍ୟରେ ସବୁଠାରୁ ପ୍ରାଚୀନତମ ଜାତି ହେଉଛି ନିଗ୍ରୋ ଆକୃତି ବିଶିଷ୍ଟ ଆଦିମ ମାନବ । ଏମାନଙ୍କର ବର୍ଣ୍ଣ କଳା, ନାକ ଚେପ୍‌ଟା, ଓ ବହଳିଆ ଏବଂ ଓଠ ଚଉଡା । କେତେକ ଐତିହାସିକମାନଙ୍କ ମତ ଯେ ଏମାନେ ଆଫ୍ରିକା ମହାଦେଶରୁ ଆରବ ଓ ଇରାନ୍ ଦେଇ ଭାରତରେ ସର୍ବ ପ୍ରଥମେ ପ୍ରବେଶ କରିଥିଲେ । ଏମାନଙ୍କର ଅବଶେଷ ଦକ୍ଷିଣ ଭାରତର ଏରୁଲା, କୁରୁମ୍ଭା, କାଦିର ପ୍ରଭୃତି ଗୋଷ୍ଠୀ ରୂପେ ଖ୍ୟାତ । ପରବର୍ତ୍ତୀ ଆଗନ୍ତୁକ ପ୍ରୋଟୋ- ଆଷ୍ଟ୍ରେଲିଅଡ୍ ବା ଶବର ଶ୍ରେଣୀ ସହିତ ଏମାନଙ୍କର ମିଶ୍ରଣରେ ନିଜର ସତ୍ତାଲୋପ କରି, ପ୍ରୋଟୋ-ଅଷ୍ଟ୍ରେଲିଅଡ୍‌ମାନେ ଆଦିମତମ ଜାତି ରୂପେ ପରିଚିତ ହୋଇଅଛନ୍ତି । ଅନ୍ୟ ପଣ୍ଡିତମାନଙ୍କ ବିଶ୍ୱାସ, ପୃଥିବୀର ପ୍ରଥମ ମନୁଷ୍ୟ ଯବଦ୍ୱୀପ, ମଧ୍ୟ ଏସିଆର ଦକ୍ଷିଣ ଭାଗ, ଅଷ୍ଟ୍ରେଲିଆ, ଆଫ୍ରିକା ଏବଂ ଭାରତ ଏହି ଅଞ୍ଚଳମାନଙ୍କରେ ଜନ୍ମ ଗ୍ରହଣ କରିଥିଲେ । ଏହି ଆଦିମ ଜାତିକୁ ଅଷ୍ଟ୍ରେ-ଏସୀୟ ଜାତି ବା ଅନ୍ୟ କେତେକ ମତରେ କୋହ୍ଲ ବା ମୁଣ୍ଡାରୀ ଗୋଷ୍ଠୀ କୁହାଯାଏ ।

ଭାରତୀୟ ଶବର ଗୋଷ୍ଠୀ ସହିତ ଟାଇଗ୍ରୀସ୍, ୟୁଫ୍ରେଟିସ୍ ଧରି ଦକ୍ଷିଣ ଚାଲ୍‌ଡିଆରେ ଥିବା ସୁମେରୀୟ ଗୋଷ୍ଠୀ ଓ ସିଂହଳବାସୀ ବ୍ୟାଧ ଗୋଷ୍ଠୀର ସାମଞ୍ଜସ୍ୟ ଥିଲା ବୋଲି ଐତିହାସିକମାନେ କହନ୍ତି ।• ଉପରୋକ୍ତ କୋହ୍ଲ ବା ମୁଣ୍ଡାରୀ ଗୋଷ୍ଠୀ ଛୋଟ ନାଗପୁର, ସୁନ୍ଦରଗଡ, ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ ଓ ରେଢ଼ାଖୋଲ ଅଞ୍ଚଳରେ ଦେଖାଯାନ୍ତି । ଏମାନଙ୍କ ସହିତ ଆସାମର ଖାସୀ, ବ୍ରହ୍ମଦେଶର ମନ, ନିଉଗିନିର ପପାନ୍, ମାଳୟ ଉପଦ୍ୱୀପର ରେମାଙ୍ଗ, ଫିଲିପାଇନ୍‌ସର ଆଏଟ୍; ଆଣ୍ଡାମାନ ଓ ଜାଭାର କଲଙ୍ଗମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ରହିଛି ।

ସୁନ୍ଦରଗଡ ଜିଲ୍ଲାରେ ଆଦି ମାନବର ବାସସ୍ଥାନ ବିଷୟରେ 'ବେଦବ୍ୟାସ' ପୁସ୍ତକରେ ଆଲୋଚିତ ହୋଇଛି । ଆଦ୍ୟ ପ୍ରସ୍ତର ଯୁଗର ମନୁଷ୍ୟ ଦ୍ୱାରା ଅସ୍ତ୍ରଶସ୍ତ୍ର, ଯଥା:- ଟାଙ୍ଗିଆ (Hand Axes), Cleavers, Scrapers ପ୍ରଭୃତି ବିଶାଳବୁରି, ଢଙ୍ଗରା ଓ ସାତକୁଟ ଅଞ୍ଚଳରୁ ମିଳିଛି । ପୁଣ୍ୟତୋୟା ବ୍ରାହ୍ମଣୀ ଉପତ୍ୟକାରେ ପ୍ରାଚୀନ ପ୍ରସ୍ତର ଯୁଗର ସଭ୍ୟତା ଗଢ଼ି ଉଠିଥିଲା । ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ଢେଙ୍କାନାଳ, କାଳିଆକଟା, ହରିଚନ୍ଦନପୁର, କୁଡେବଗାଠାରୁ ମିଳିଛି । •• କୁଡେବଗାଠାରୁ ମିଳିଥିବା ପ୍ରନ୍ତପ୍ରସ୍ତରାସ୍ତ୍ର କଲିକତା ଯାଦୁଘରେ ସଂରକ୍ଷିତ ଅଛି ।

---

• *ଦାରୁ ଦେବତା- ଡକ୍ଟର ବେଣୀ ମାଧବ ପାଢ଼ୀ*

•• *ବ୍ରାହ୍ମଣୀ ସଭ୍ୟତାର ଏକ ଅଧ୍ୟାୟ, ପ୍ରାଚୀନ ଉତ୍କଳର ଧର୍ମ ଓ ପ୍ରନ୍ତତତ୍ତ୍ୱ*

ଓଡ଼ିଶାରେ ଏ ଦିଗରେ ପ୍ରଚେଷ୍ଟା ପ୍ରଥମ ଭୂତତ୍ତ୍ୱବିଦ୍ ଭେଲେଣ୍ଟାଇନ୍ ବଲ ସାହେବ ୧୮୭୬ ମସିହାରେ ଢେଙ୍କାନାଳ, ତାଳଚେର, ଅନୁଗୁଳ, ସମ୍ବଲପୁରରୁ କେତୋଟି ହତିଆର ସଂଗ୍ରହ କରି ତତ୍ ସମ୍ବନ୍ଧରେ ବଙ୍ଗୀୟ ଏସିଆଟିକ୍ ସୋସାଇଟି ପତ୍ରିକାରେ ଏକ ପ୍ରବନ୍ଧ ଲେଖିଥିଲେ ।• ରେଢ଼ାଖୋଲର 'ଟାଲ୍' ଗ୍ରାମ ଅଞ୍ଚଳରୁ ପାହାଡ ପାଦ ଦେଶରେ ଟାଲପ୍ରୋଜେକ୍ଟ ତଳରୁ କେତେକ ପ୍ରସ୍ତର ନିର୍ମିତ ଅସ୍ତ୍ର ଓ ପୋହଳା ମିଳିଥିବାର ଲେଖକ ଜାଣିବାକୁ ପାଇଥିଲେ । ସମ୍ଭବତଃ ପ୍ରାଚୀନ ଅଧିବାସୀମାନେ ସେଠାରେ ବସବାସ କରୁଥିଲେ । 'ଟାଲ୍'ର ଅର୍ଥ ପାଣି ଆସିବାର ନାଳ ବା ଅଣା । ପଦମ୍ପୁର (ସମ୍ବଲପୁର ଅଞ୍ଚଳରେ) ଟାଲ ନାମରେ ଏକ ଗ୍ରାମ ଅଛି । ରେଢ଼ାଖୋଲର ଟାଲ ଗ୍ରାମ ପର୍ବତ ତଳରୁ ବହି ଆସିଥିବା ଏକ ପାଣି ନାଳ କଡରେ ଅବସ୍ଥିତ । ପାହାଡ କଡରେ ପୂର୍ବରୁ ଗ୍ରାମ ଥିଲା । ବର୍ତ୍ତମାନ ସେଠାରୁ ଦୂରକୁ ଗ୍ରାମ ଉଠି ଆସିଛି । ଏହି ଅଞ୍ଚଳକୁ ଲାଗିଥିବା ସୋନପୁର ଅଞ୍ଚଳରୁ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ ପ୍ରାକ୍ଐତିହାସକ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ସଂଗ୍ରହ କରିଛନ୍ତି ।•• ସେ ସୋନପୁର ଅଞ୍ଚଳର ମନୁମୁଣ୍ଡା, ହଳଦିପାଲି, ଖାରୀ, ଘାଟ କର୍ଣ୍ଣତରା, ଦେଉଳି ଆଦି ସ୍ଥାନରୁ ବିଭିନ୍ନ ଆକାରର କ୍ଷୁଦ୍ରପଥର, ଛେଲାର, ଛୁରୀ, କଟୁରୀ, ଟାଙ୍ଗିଆ ଆଦି ଅସ୍ତ୍ରଶସ୍ତ୍ର ସଂଗ୍ରହ କରିଛନ୍ତି । ଏ ଅଞ୍ଚଳର ଅସୁରଗଡ, ଅସୁରମୁଣ୍ଡା, ଅସୁରାଳି ଆଦି ନାମରେ ଆହୁରି ଅନେକ ସ୍ଥାନ ଅଛି । ଯେଉଁଠାରୁ ପଥର ନିର୍ମିତ ଅସ୍ତ୍ର, ଶସ୍ତ୍ର, ଅଳଙ୍କାର, ମୃତ୍‌ପାତ୍ର ପ୍ରଭୃତି ବହୁତ ପ୍ରାଚୀନ ବସ୍ତୁ ସଂଗ୍ରହ କରାଯାଇଛି । ଏଥିରୁ ସୋନପୁର ଅଞ୍ଚଳ ଓ ତତ୍ ସଂଲଗ୍ନ ରେଢ଼ାଖୋଲ ଅଞ୍ଚଳରେ ବହୁ ପୁରାତନ ମଣିଷର ବସତି ସ୍ଥଳ ଥିବା ଅନୁମିତ ହୁଏ ।

ରେଢ଼ାଖୋଲ ଅଞ୍ଚଳରେ କୋହ୍ଲମାନଙ୍କର ବସତି ଥିଲା । କିନ୍ତୁ ବର୍ତ୍ତମାନ ସେହି ସ୍ଥାନରେ ଗଣ୍ଡ ଓ କନ୍ଧ ବସତି ରହିଛି । 'ଲୁକୁମୁରା' ହେମାମୁରା, ତଣ୍ଡାବିରା, ହିଞ୍ଜାମୁରା, ଭାଡ଼ିମୁରା, ପାଣିମୁରା, ତାଳିମୁରା, ହିତସରା ଅଙ୍ଗାବିରା, ନିଶାବିରା, ଅତାବିରା, ହଂସମୁରା, ଆଦି ଅଞ୍ଚଳ କୋହ୍ଲମାନଙ୍କ ଦ୍ୱାରା ନାମିତ । ଅଧିକାଂଶ ସ୍ଥାନରେ 'ମୁରା' ଯୋଗହୋଇଛି । ଏହି 'ମୁରା' ପ୍ରତ୍ୟୟ କୋହ୍ଲ ସଂସ୍କୃତିର ପରିଚାୟକ । ଭୂୟାଁ ଜାତିର ଏକ ଶାଖାକୁ ବାରହର ବୋଲି କହନ୍ତି । ଏହି ନାମର ବାରଲାଗି ଗ୍ରାମମାନ ରହିଛି । ଯଥା:- ଉଟୁବୀରା = ଅଟାବୀରା = ଅତାବିରା, ନିଶାବିରା, ଅଙ୍ଗାବିରା ଇତ୍ୟାଦି ।◆

---

• *ପ୍ରାକ୍ ଐତିହାସିକ ଓଡ଼ିଶା- ପ୍ରସ୍ତର ଯୁଗ - ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ*

•• *ସୋନପୁରର ଆଦିମ ଅଧିବାସୀ- ଶ୍ରୀ ପ୍ରସନ୍ନ କୁମାର ଛୋଟରାୟ ଓ କମଳାକାନ୍ତ ଖୁଣ୍ଟିଆ । ସୋନପୁର ପ୍ରାଦେଶିକ ଲେଖକ ସମ୍ମିଳନୀ ସ୍ମରଣୀକା - ୧୯୮୦-୮୧*

◆ *ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ - ୨ୟ ଭାଗ ।*

ଏହା ବ୍ୟତୀତ ବାହାମୁଣ୍ଡା, ତୋଡଲମୁଣ୍ଡା, ଧାବୁମୁଣ୍ଡା, ମୁଣ୍ଡେଇ, ମାନକୁଣ୍ଡା, ପଣ୍ଡୁଆ, ହିଣ୍ଡୋଳ, ଶୁଣ୍ଢିମୁଣ୍ଡା, କେନ୍ଦୁମୁଣ୍ଡା, ଝାରମୁଣ୍ଡା, ପୋତାବଲଣ୍ଡା, ବୁରୁଡା, କିସିଣ୍ଡା, ଗଏଲମୁଣ୍ଡି, ମାଲଗୁଣ୍ଡା ଛାମୁଣ୍ଡା ଖଣ୍ଡତା ଆଦି ସ୍ଥାନର ନାମକରଣରେ ମୁଣ୍ଡାରି ଜାତିର ପ୍ରଭାବ ପଡ଼ିଛି । ସାଧୁମୁଣ୍ଡା, ମେଟ୍ରୋମୁଣ୍ଡା, ଉପରମୁଣ୍ଡା, ଫଟାମୁଣ୍ଡା, ଖଣ୍ଡିଆମୁଣ୍ଡା, ଭାଲୁମୁଣ୍ଡିଆ, ଚକାମୁଣ୍ଡା, ଶିମିଳିମୁଣ୍ଡି, ତୁଟାମୁଣ୍ଡାରେ ବର୍ତ୍ତମାନର ଗଣ୍ଡମାନଙ୍କର ପ୍ରଭାବ ବେଶି ଥିବା ପରି ଜଣାପଡେ । ସେହିପରି କୁହି, କେଲୋ, କେଲୋବେର୍ଣ୍ଣିଂ, କେଲାକଟା, କର୍ଣ୍ଣଗ୍ରାମ ଇତ୍ୟାଦି ଜନବସତିରେ ଗଣ୍ଡମାନଙ୍କର ପ୍ରାଧାନ୍ୟ ଥିଲା । ମୁଣ୍ଡା ଭାଷାର ସମ୍ପର୍କ ଭାରତୀୟ-ଚୀନ ଭାଷାର ଅନ୍ତର୍ଗତ ମନକ୍ଷ୍ମେର ଭାଷା ସହିତ ଏକ ଥିବାରୁ ମୁଣ୍ଡାଭାଷୀ ଲୋକମାନେ ଭାରତୀୟ ପ୍ରାଚୀନ ଲୋକମାନଙ୍କର ବଂଶଧର ଅଟନ୍ତି । ମୁଣ୍ଡାରୀ ଭାଷାର ଲୋକମାନଙ୍କ ମଧ୍ୟରୁ ମୁଣ୍ଡା, କୋହ୍ଲ, ସାନ୍ତାଳ, ଭୂମିଜ, ଜୁଆଙ୍ଗ ଓ ଶବରମାନେ ପ୍ରଧାନ । ସାନ୍ତାଳ ପ୍ରଗଣା, ଛୋଟନାଗପୁର, ଓଡ଼ିଶାର ପାର୍ବତ୍ୟାଞ୍ଚଳ ତଥା ରେଢ଼ାଖୋଲ ସବ୍‌ଡିଭିଜନର ଅଧିକାଂଶ ଅଞ୍ଚଳ, ମଧ୍ୟ ପ୍ରଦେଶର ପୂର୍ବାଞ୍ଚଳ ଓ ଆନ୍ଧ୍ରର ଉତ୍ତରାଞ୍ଚଳ ଘେନି ବିସ୍ତୃତ ଭୂଖଣ୍ଡରେ ଏହି ସବୁ ଲୋକମାନେ ଦେଖାଯାନ୍ତି ।◆

ପୂର୍ବେ ଭୂୟାଁ ସମ୍ପ୍ରଦାୟ ଏହି ଅଞ୍ଚଳରେ ଥିଲାପରି ଜଣାପଡୁଥିଲେ ମଧ୍ୟ ବର୍ତ୍ତମାନ ପ୍ରାୟ ଭୂୟାଁ ନାହାନ୍ତି । କିନ୍ତୁ ବାଙ୍ଗିରିପୋଷି ପରି ରେଢ଼ାଖୋଲ ଅଞ୍ଚଳର ପଣ୍ଡିପୋଷି, ଚଉତପୋଷି, କୁଦପୋଷି, ତିଲେଇପୋଷି ଆଦି ଗ୍ରାମ ଦେଖାଯାଏ । ଲୋଇ ନାମଧାରି ଗ୍ରାମ ଯଥା:- ବସାଲୋଇ, ବନ୍ତାଲୋଇ, କୁହି, ବନକୁହି, ବାରଲୋଇ, ଜାମଲୋଇ, ହୀରାଲୋଇ, ଲୋଇସିଂହା ଆଦି ଅଞ୍ଚଳ ଗଣ୍ଡମାନଙ୍କର ପ୍ରଧାନ ଅଞ୍ଚଳ ହୋଇ ରହିଛି । ଅନେକ ଗ୍ରାମର ନାମ ଡୁଙ୍କଛେଲି, ଦଲକୀ, ତର୍ଛଚା, ଲାଇଜା, ଲୁବ୍ରି, ଲୁସୁରା ଆଦି ଅଞ୍ଚଳରେ ଶୁଦ୍ରମାନଙ୍କର ପ୍ରାଧାନ୍ୟ ରହିଛି । ବର୍ତ୍ତମାନ ଅଧିକାଂଶ ଗ୍ରାମରେ ଚଷାମାନେ ଢ଼େଙ୍କାନାଳ, ଅନୁଗୋଳ, ଅଞ୍ଚଳରୁ ଆସି ପ୍ରାଧାନ୍ୟ ଲାଭ କଲେଣି । ଚାଷର ଉନ୍ନତି ପାଇଁ ରାଜାନୁଗ୍ରହ ପାଇ ଚଷାମାନେ ଗ୍ରାମର ଗୌନ୍ତୀକିଣି ନେଉଥିଲେ । ରାଜାମାନେ ଚଷାବସ୍ତି ସ୍ଥାପନ କରୁଥିଲେ । ଲୋଇସିଙ୍ଗା, ତାମ୍ବର ଶିଙ୍ଗା, ଜରାସିଙ୍ଗା, ବଲାସିଙ୍ଗା, ମହାସିଙ୍ଗା, ତେଲସିଙ୍ଗା, କୁଟାସିଙ୍ଗା, ପ୍ରଭୃତିର ନାମକରଣରେ ଅନୁଗୋଳ ଅଞ୍ଚଳର ପ୍ରଭାବ ପଡିଥିବା ଜଣାପଡେ । ଅନୁଗୋଳର ବାରସିଙ୍ଗା, କୁଣାସିଙ୍ଗା, ଜରାସିଙ୍ଗା, ହୁଲୁରୁସିଙ୍ଗା, ରଙ୍ଗାସିଙ୍ଗା, କମୁରୁସିଙ୍ଗା, ଶାକସିଙ୍ଗା, ବଲାସିଙ୍ଗା, ତୁମ୍‌ସିଙ୍ଗା, ରୋଡସିଙ୍ଗା, କୁସୁରିସିଙ୍ଗା ନାମରେ ଗ୍ରାମମାନ ବିଦ୍ୟମାନ । ଅନୁଗୋଳ ଅଞ୍ଚଳର ବାରସିଙ୍ଗା ତେରବେଡା (ବେଡା, ବିମଳ ବେଡା, ଦୁଧିଆ ବେଡା, ଲଙ୍କୁଳିଆ ବେଡା, ପୁରିଆ ବେଡା, କନ୍ୟାବେଡା ପ୍ରଭୃତି) ପରି

---

◆ *ଅନୁଗୋଳ ଇତିହାସ - ଗୋବିନ୍ଦ ରାଜଗୁରୁ*

ରେଢ଼ାଖୋଲ ଅଞ୍ଚଳରେ ଗେଲାବେଡା, ଚେନାବେଡା, ଝାରବେଡା, ରାଣିବେଡା, ଡେରବେଡା ପ୍ରଭୃତି ଗ୍ରାମମାନ ଅବସ୍ଥିତ । ଏହି ଗ୍ରାମମାନଙ୍କରେ ଅନୁଗୋଳ ଅଞ୍ଚଳରୁ ଆସିଥିବା ଚଷାମାନେ ବସତି ସ୍ଥାପନ କରିଛନ୍ତି ।

ରେଢ଼ଖୋଲରେ ଖୋଲ ବା ପର୍ବତ କନ୍ଦର ଅଧିକ ଦେଖାଯାଏ । ଆଦିମ ଲୋକମାନେ ଖୋଲମାନଙ୍କରେ ବାସ କରୁଥିଲେ । ରେଢ଼ଖୋଲରେ ଖୋଲ ନାମର ଗ୍ରାମ ବହୁଳ ଭାବରେ ଦେଖାଯାଏ । ଯଥା:- ହେମନ୍ତ ଖୋଲ, ରଙ୍ଗଣା ଖୋଲ, ଗାଡଖୋଲ, କଟଙ୍ଗ ଖୋଲ, ଭର୍ଇରଖୋଲ, ଦାଦର ଖୋଲ, ଡଙ୍ଗଖୋଲ, ବଡ ଖୋଲ, ତେନ୍ତୁଳି ଖୋଲ, ପଣ୍ଡରା ଖୋଲ, ପୋଡାଖୋଲ, ଝିଙ୍କ ଖୋଲ, ବଇଠଖୋଲ, କୁଆଖୋଲ, ଚମ୍ପାଖୋଲ, ବୁଢ଼ାଖୋଲ, ଖୋଲଗଡ । ଆଦିମ ମାନବ ପ୍ରଥମେ ପର୍ବତ ଖୋଲ, ବା ର୍ପବତ କନ୍ଦରରେ ବାସକରୁଥିବାର ସୂଚନା ମିଳେ । ସେହିପରି 'ଖମନ'ର ଅର୍ଥ ନିମ୍ନ ପର୍ବତ ଖୋଲ ବା ଦୁଇପଟ ପର୍ବତମାଳା ମଧ୍ୟରେ ଥିବା ପଥୁରିଆ ସ୍ଥାନ । 'ବିଜୁଳି ଖମନ ' ପରି ନାମ ସୁନ୍ଦରଗଡ ଅଞ୍ଚଳରେ ଦେଖାଯାଏ । ରେଢ଼ଖୋଲରେ ମଧ୍ୟ ସେହିପରି ପାଟଖମନ, ବାଙ୍କାଖମନ, ଧଉରାଖମନ, ଖରିଣିଖମନ, ଧଳଖମନ ପ୍ରଭୃତି ନାମ ଦେଖାଯାଏ । ପାଳଲହଡା ଅଞ୍ଚଳ ତଥା ଯାଜପୁର ଓ କେନ୍ଦ୍ରାପଡା ଅଞ୍ଚଳର ବ୍ରାହ୍ମଣୀ କୂଳରେ ଥିବା ଗ୍ରାମମାନଙ୍କର ନାମରେ 'ପାଳ'ଯୁକ୍ତ ହୋଇଥିବାର ଦେଖାଯାଏ , ଯଥା:- ଖଡିପାଳ, ତରଡିପାଳ । ଏହିପରି ରେଢ଼ଖୋଲ ଅଞ୍ଚଳରେ ବୁଢ଼ାପାଳ, କରଡାପାଳ, ସମିଳିପାଳ, ମଝିପାଳ, କାଇଁଶିପାଳ ପ୍ରଭୃତି ନାମ ଦେଖାଯାଏ ।

ଅଧ୍ୟାପକ ପ୍ରସନ୍ନ କୁମାର ଛୋଟରାୟ ଓ କମଳାକାନ୍ତ ଖୁଣ୍ଟିଆ ରାୟ ବାହାଦୂର ଶରତ ଚନ୍ଦ୍ର ରାୟଙ୍କ ଆଲୋଚନାରୁ ଉଦ୍ଧୃତି ଦେଇ ଦର୍ଶାଇଛନ୍ତି ଯେ ଗଣ୍ଡ, କୋହ୍ଲ, ମୁଣ୍ଡା ଆଦି ଆଦିବାସୀମାନେ ପ୍ରାଚୀନ କାଳରେ ଭାରତରେ ବାସକରୁଥିଲେ । 'ବଙ୍ଗ୍ରିଡା' ଅସୁର (ଋକ୍ ବେଦ ସଂହିତାର ପ୍ରଥମ ମଣ୍ଡଳ ୧-୧୦-୩ ଅଷ୍ଟମପଂକ୍ତି) ଏହି ଆଦିବାସୀ ସମ୍ପ୍ରଦାୟର ବୋଲି ଅନୁମାନ କରିଛନ୍ତି । ଅଧ୍ୟାପକ ଦ୍ୱୟ ସୋନପୁର ଅନ୍ତର୍ଗତ 'ବାଙ୍କି ଗିରିଡି' ଗ୍ରାମ ଉକ୍ତ ଅସୁରର ଦୁର୍ଗ ବୋଲି ଦର୍ଶାଇଛନ୍ତି । ବଙ୍ଗ୍ରିଡା କ୍ରମେ ଅପଭ୍ରଷ୍ଟ ହୋଇ 'ବାଙ୍କି ଗିରିଡି'ରେ ପରିଣତ ହୋଇଛି । କୋହ୍ଲମାନେ ସୋନପୁରରେ ବହୁଳ ପରିମାଣରେ ଦେଖାଯାନ୍ତି । ଏହି ଆଦିବାସୀଙ୍କ ମଧ୍ୟରୁ 'ବଙ୍ଗ୍ରିଡା' ଉପଜାତିର ଲୋକମାନେ ଖର୍ବକାୟ । ରେଢ଼ାଖୋଲରେ କୋହ୍ଲମାନେ ସାଧାରଣତଃ ଜଙ୍ଗଲରୁ ଝୁଣା ଓ ମହୁ ସଂଗ୍ରହ କରିଥାନ୍ତି ।

ଡଃ ସତ୍ୟ ନାରାୟଣ ରାଜଗୁରୁ ମତ ଦିଅନ୍ତି ଯେ, ଋର୍ ବେଦ ତଥା ଐତରେୟ ବ୍ରାହ୍ମଣରେ ଯେଉଁ 'ଅସୁର' ସଞ୍ଜ୍ଞକ ଏକ ଜାତି ସହିତ ବୈଦିକ ଆର୍ଯ୍ୟମାନଙ୍କର ବିବାଦ ସଂଘଟିତ ହୋଇଥିଲା । (ଋକ୍‌ବେଦ ମଂ - ୧ ସୂ୨୫ ମନ୍ତ୍ର ଓ ଐତରେୟ ବ୍ରାହ୍ମଣ - ଅଧ୍ୟାୟ ୧୪ ଖଣ୍ଡ ୧ମ), ସେମାନେ 'ଏସିରିୟେନ୍' କାରଣ ଏସିରିଆକୁ ଅସୁରସ୍ଥାନ

ବୋଲି କୁହାଯାଏ । ଏହା ସେମାନଙ୍କର ମୌଳିକ ବାସସ୍ଥାନ । ଏହା ବିସ୍ତୃତିରେ ୭୫୦୦୦ ବର୍ଗମାଇଲ ଥିଲା । ସେହି ଦୁର୍ଦ୍ଧର୍ଷ ଅସୁର ଜାତି ସିମ୍(Shim)ଙ୍କର ଔରସ ସନ୍ତାନ ଓ ସେମିଟିକ୍ ପରିବାରର ଲୋକଥିଲେ । ସେମାନେ ଆର୍ଯ୍ୟମାନଙ୍କର ଆଗମନ ପୂର୍ବରୁ ଭାରତରେ ପ୍ରବେଶ କରି ସାରିଥିଲେ ।

ଓଡ଼ିଶାର ଆଦିମ ଅଧିବାସୀ, ପ୍ରଥମେ ଉନ୍ମୁକ୍ତ ବାୟୁମଣ୍ଡଳରେ ପ୍ରକୃତି ଦେବୀଙ୍କ କ୍ରୋଡ଼ରେ ସ୍ୱଚ୍ଛନ୍ଦରେ ବିଚରଣ କରୁଥିଲେ । କାଳକ୍ରମେ ସେମାନେ ପ୍ରାକୃତିକ ଦୁର୍ବିପାକରୁ ରକ୍ଷା ପାଇବା ପାଇଁ ପର୍ବତ ଗୁମ୍ଫାମାନଙ୍କରେ ଆଶ୍ରୟ ନେଉଥିଲେ । ଓଡ଼ିଶାର ସୁବିଖ୍ୟାତ ଧଉଳିପାହାଡ, ଗଞ୍ଜାମର ଜଉଗଡ ଓ ଖଣ୍ଡଗିରିର ହାତୀଗୁମ୍ଫା ଇତ୍ୟାଦି ବିଖ୍ୟାତ ହେଲେ ମଧ୍ୟ ରେଢ଼ାଖୋଲର ନିମ୍ନ ବର୍ଣ୍ଣିତ ଗୁମ୍ଫାଗୁଡ଼ିକ ଅତି ପ୍ରାଚୀନ ।

ଭୀମ ମୁଣ୍ଡୁଳୀ:-

ଭୀମମୁଣ୍ଡୁଳୀ ରେଢ଼ାଖୋଲ ରାଜ୍ୟର ନାକଟି ଦେଉଳ ଅଞ୍ଚଳର ଚମ୍ପାଳି ନଦୀ କୂଳରେ ଅବସ୍ଥିତ । ସେଠାରେ ପହଞ୍ଚିବାକୁ ହେଲେ ରେଢ଼ାଖୋଲ-ଦେବଗଡ ରାସ୍ତାରେ ୨୦ କିଲୋମିଟର ଯିବାକୁ ହେବ । ସେହି ରାସ୍ତାରେ ସିମିଳିପାଳ ଏକ ଗ୍ରାମ । ସେଠାରୁ ପୂର୍ବକୁ ରାଇଲ ରାସ୍ତାରେ ଯିବାକୁ ହେବ । ସେହି ରାସ୍ତାରେ ଲୁସୁରା ଗ୍ରାମ ପରେ ପରେ ବାମପଟେ ଚମ୍ପାଳି ନଦୀ ପାର ହେବାକୁ ପଡ଼ିବ । ସେହି ନଦୀକୂଳେ କୂଳେ ଏକ ଚଲାରାସ୍ତାରେ କିଛିବାଟ ଗଲେ ଚମ୍ପାଳି ନଦୀକୁ ପୁଣି ଦୁଇଥର ପାରହୋଇ ସେ ସ୍ଥାନରେ ପହଞ୍ଚିହେବ ।

ଚମ୍ପାଳି ନଦୀ ସେହି ସ୍ଥାନରେ ଅଶ୍ୱକ୍ଷୁରା-କୃତି ହୋଇଅଛି । ନଦୀ ମଧ୍ୟରେ ଏକ ବଡ ପଥର ଖଣ୍ଡର ଅବସ୍ଥିତି ଏକ ଅପୂର୍ଣ୍ଣାଙ୍ଗ ନଦୀବନ୍ଧର ଭ୍ରମ ସୃଷ୍ଟି କରେ । ଜନଶ୍ରୁତିରୁ ଜଣାଯାଏ ଦ୍ୱିତୀୟ ପାଣ୍ଡବ ଭୀମ ନଦୀ ଗର୍ଭରେ ସେହି ବଡ଼ ପଥର ଖଣ୍ଡ ପକାଇ ଚମ୍ପାଳିରେ ପଥର ବନ୍ଧ ନିର୍ମାଣ କରୁଥିଲେ । ସେତେବେଳେ ସେ ସମ୍ପୂର୍ଣ୍ଣ ଉଲଗ୍ନ ଥିଲେ । ପୁଅ କିଛି ଖାଇ ନଥିଲା । ତେଣୁ ତାଙ୍କର ମାତା କୁନ୍ତୀ ଦେବୀ କିଛି ପିଠାଧରି ସେଠାରେ ହଠାତ୍ ପହଞ୍ଚିଗଲେ । ଲଜ୍ଜାରେ ଭୀମ ଏକ ଗୁମ୍ଫା ମଧ୍ୟରେ ଲୁଚିଗଲେ । କୁନ୍ତୀଦେବୀ ପୁଅକୁ ସେ ସ୍ଥାନରେ ନ ପାଇ ପିଠାଖଣ୍ଡ ସେଠାରେ ରଖିଦେଇ ପ୍ରତ୍ୟାବର୍ତ୍ତନ କଲେ । ଲୋକମାନେ ସେଠାରେ ଥିବା ଖଣ୍ଡେ ପଥରକୁ 'କୁଣ୍ଡାପିଠା' ବୋଲି କହୁଛନ୍ତି । ଏହା ଚମ୍ପାଳିର ଦକ୍ଷିଣ କୂଳରେ ଅବସ୍ଥିତ ।

ଦ୍ୱିତୀୟ ପାଣ୍ଡବ ଭୀମ ଯେଉଁ ଗୁମ୍ଫା ମଧ୍ୟରେ ଲୁଚି ରହିଥିଲେ, ସେ ସେହି ଗୁମ୍ଫା ମଧ୍ୟରେ ଆଗକୁ ଆଗକୁ ଯିବାକୁ ଲାଗିଲେ । କଥିତ ଅଛି ଭୀମ ଗୁମ୍ଫା ମଧ୍ୟରେ ଧୀରେ ଧୀରେ ଅଗ୍ରସର ହୋଇ ବାଟଗାଁ ନିକଟସ୍ଥ ଚଡବଡି ଗ୍ରାମ ନିକଟରେ ଥିବା 'ଭୀମତୁମ୍ବା' ଠାରେ ବାହାରି ଚାଲିଗଲେ । ଭୀମ ଯେଉଁ ଗୁମ୍ଫା ମଧ୍ୟରେ ପ୍ରବେଶ କରିଥିଲେ ତାହାକୁ 'ଭୀମଦହଁ ' କୁହାଯାଏ ।

ଭୀମଦର୍ହ୍ଂ ଗୁମ୍ଫାଟି ୨ମିଟର ଚଉଡା ଓ ଦେଢ଼ମିଟର ଉଚ୍ଚ ଏକ ଗୁମ୍ଫା । ଏହା ମଧ୍ୟରେ ୧୫ ମିଟର ଗୁରୁଣ୍ଡିଗୁରୁଣ୍ଡି ଗଲାପରେ ପୁଣି ଚାଲି ଚାଲି ଯିବାକୁ ହୁଏ । ଭିତରକୁ ସୁଡଙ୍ଗର ଉଚ୍ଚତା ପ୍ରାୟ ଦୁଇ ମିଟର । କିନ୍ତୁ ପ୍ରକୃତରେ କେତେ ବଡ଼ ସୁଡଙ୍ଗ ଅଛି ସ୍ଥାନଟି ବିପଦ ସଙ୍କୁଳ ଥିବାରୁ ପରୀକ୍ଷା କରିବା ସମ୍ଭବ ହୋଇପାରିଲା ନାହିଁ । ପ୍ରକୃତରେ ଏହାର ବିସ୍ତୃତି ପରୀକ୍ଷା କଲେ ଜଣାପଡ଼ିଯିବ ।

ଭୀମମୁଣ୍ଡୁଳୀକୁ ଯିବାକୁ ନାକଟିଦେଉଳଠାରୁ ପେଣ୍ଠ ବାହାଲ ଗ୍ରାମ ଦେଇ ଚମ୍ପାଳି କଡେ କଡେ, ବେଳେ ବେଳେ ନଦୀ ଶଯ୍ୟାରେ ଚାଲି ଚାଲି ଯାଇହୁଏ । ଏହି ରାସ୍ତାରେ କେବଳ ଖରାଦିନେ ଯାଇ ହୁଏ । ଏହା ମଧ ବିପଦ ସଙ୍କୁଳ ରାସ୍ତା ।

ଭୀମଦର୍ହା ଓ ଚମ୍ପାଳି ଯେଉଁଠାରେ ଅଶ୍ୱକ୍ଷୁରାକୃତି ଧାରଣ କରିଛି, ସେହି ସ୍ଥାନରେ ଏକ ପ୍ରସ୍ତର ଉଚ୍ଚ ପ୍ରାଚୀର ପରି ଲମ୍ୱି ରହିଛି । ଭୀମମୁଣ୍ଡୁଳୀର ଏହା ଏକ ଆକର୍ଷଣ । ଜଳଭାଗ ମଧ୍ୟରେ ଏହା ଏକ ଉପଦ୍ୱୀପ ସଦୃଶ । ପ୍ରାଚୀର ପରି ଏହି ପାହାଡ ଖଣ୍ଡର ଦୁଇ ପାର୍ଶ୍ୱକୁ ସତେଯେପରି ଚମ୍ପାଳି ନଦୀ ପ୍ଲାବିତ କରିଛି ! ଏହି ପଥରକୁ ଭୀମ ଏକ ଅର୍ଦ୍ଧ ଗୋଲାକାର ମୁଣ୍ଡୁଳୀ ଆକୃତି କରିଥିବାର ଲୋକମାନଙ୍କର ବିଶ୍ୱାସ । ତେଣୁ ଏହାକୁ ଭୀମମୁଣ୍ଡୁଳୀ କହନ୍ତି ।

ଚମ୍ପାଳୀ ନଦୀ କୂଳରେ ଦଣ୍ଡାୟମାନ ଏହି ପଥରର ଦୁଇପାଖରେ ମୁଣ୍ଡଳୀ ଆକୃତିର ପୋଟିକୋ ପରି ପଥର ୩ମିଟର ଚଉଡା ବାହାରକୁ ଝୁଲିକରି ରହିଛି । ସେଠାରେ ଖରା-ବର୍ଷା ସବୁ ସମୟରେ ଆଶ୍ରୟ ନେଇ ହୁଏ । ପ୍ରାୟ ୭ ମିଟର ଉଚ୍ଚ X ୩ ମିଟର ପ୍ରସ୍ଥ X ୬ ମିଟର ଲମ୍ୱ ଓ ଅନ୍ୟପଟରେ ୫ ମିଟର ଉଚ୍ଚ X ୨.୫ମିଟର ଲମ୍ୱ X ପ୍ରସ୍ଥ ୩ ମିଟରର ଦୁଇଟି ଆଶ୍ରୟ ସ୍ଥଳ ମିଳିପାରୁଛି । ପଥରଗୁଡ଼ିକ ନରମ -ବାଲିପଥର ହୋଇଥିବାରୁ ପ୍ରତିକୂଳ ପାଣିପାଗରେ କ୍ଷୟହେବାକୁ ଆରମ୍ଭ କଲାଣି । ଜଣେ ସାଧୁ ତାଙ୍କର ଶେଷ ଜୀବନ ଏହି ଜଙ୍ଗଲ ପାହାଡ ଘେରା ଗୁମ୍ଫାରେ କଟାଇଥିବାରୁ ସ୍ଥାନୀୟ ଲୋକମାନେ ୧୯୮୮ ମସିହାରେ ତାଙ୍କର ସମାଧି ସେହି ସ୍ଥାନରେ ସ୍ଥାପନ କରିଛନ୍ତି । ବର୍ଷା ନହେଲେ ସେ ସ୍ଥାନରେ ଲାଣ୍ଡିମାଳ, ତଣ୍ଡାବିରା, ଲୁସୁରା ଗ୍ରାମ ପ୍ରଭୃତିରୁ ଲୋକମାନେ ପୂଜା-ହୋମ-କୀର୍ତ୍ତନ କରିଥାନ୍ତି । ଚମ୍ପାଳୀ ନଦୀଟି ଚିରସ୍ରୋତା ହୋଇଥିବାରୁ ସେଠାରେ ଲୋକମାନେ ଜପତପ କରିବାକୁ ଶ୍ରେୟ ମଣିଥାନ୍ତି ।

ଆଦିମାନବ ପ୍ରଥମେ ନିଜ ନିଜ ମଧ୍ୟରେ ଭାବ ପ୍ରକାଶ କରିବା ପାଇଁ ଛବି ଆଙ୍କି ଶିଖିଲା । ଗଛର ଛେଲି ଓ ପତ୍ର ଏବଂ ବିଭିନ୍ନ ଧାତୁ ମିଶ୍ରିତ ମାଟି ସାହାଯ୍ୟରେ ପଥରରେ ରଙ୍ଗ ଦେଲା । ଏହି ଭୀମମୁଣ୍ଡୁଳୀ ପାହାଡର ଗୁମ୍ଫାରେ ଧାଡ଼ି ଧାଡ଼ି ଅକ୍ଷର ଖୋଳା ହୋଇ ଥିବା ପରି ଦେଖାଯାଏ । ପଥର କ୍ଷୟଯୋଗୁଁ ସେଥି ମଧ୍ୟରେ ଗେରୁ ରଙ୍ଗ ଲିଭି ଗଲାଣି, ହେଲେ ମଧ କେତେକ ଅକ୍ଷରରେ ଗେରୁ ରଙ୍ଗ ସ୍ପଷ୍ଟ ଜଣାପଡୁଛି । ସମ୍ବଲପୁର ଜିଲ୍ଲାର

ବିକ୍ରମଖୋଲ ଲିପିପରି ଭୀମ ମୁଣ୍ଡଳି ଲିପି ପଢ଼ା ହୋଇପାରିଲେ ନୂତନ ତଥ୍ୟ ଆବିଷ୍କାର କରି ହୁଅନ୍ତା । ଲିପିଗୁଡ଼ିକ ଅସ୍ପଷ୍ଟ ଆକାରରେ ରହିଛି । ସୁନ୍ଦରଗଡର ଉଷାକୋଠୀ ଓ ମାଣିକ ମୁଣ୍ଡାରେ ଯେଉଁ ପ୍ରାଗ୍ ଐତିହାସିକ ଚିତ୍ରପଟ ରହିଛି, ଏଠାରେ ସେପରି ଦେଖାଯାଏ ନାହିଁ । କଳାହାଣ୍ଡି ଜିଲ୍ଲାର ଖଡିଆଳ ନିକଟସ୍ଥ ଯୋଗିମଠ ଡୋଙ୍ଗର ଗୁମ୍ଫା ମଧ୍ୟରେ ଈଷତ୍ ପୀତ ବାଦାମୀ ରଙ୍ଗ ବା ଗେରୁମାଟିରେ ଅଙ୍କିତ ଚିତ୍ରପରି ଏଠାରେ ଦେଖାଯାଏ ନାହିଁ ।• ଗେରୁମାଟିର ରଙ୍ଗରେ ପ୍ରାକୃତିକ ଗିରିଗୁହାରେ ଚିତ୍ରଅଙ୍କନ ଭାରତରେ ଅନ୍ୟ ସ୍ଥାନମାନଙ୍କରେ ମଧ୍ୟ ଦେଖାଯାଏ । ମଧ୍ୟପ୍ରଦେଶର ରାୟଗଡ ଅନ୍ତର୍ଗତ ସିଘଁନପୁର, ସିଂହଭୂମି ଜିଲ୍ଲାର ଚକ୍ରଧରପୁର ଓ ମହାରାଷ୍ଟ୍ରର ମୋରହନା ପାହାଡରେ ଏପରି ଚିତ୍ରାବଳୀ ଦେଖିବାକୁ ମିଳେ ।

ଗୁପ୍ତେଶ୍ୱର:-

ଭୀମମୁଣ୍ଡଳୀ ପାହାଡ ଠାରୁ ୩୦୦ ମିଟର ଦୂରରେ ଗୋଟିଏ କ୍ଷୁଦ୍ର ଝରଣା ଚମ୍ପାଳିର ଦକ୍ଷିଣ ତୀରରେ ବହିଆସି ଚମ୍ପାଳୀ ନଦୀରେ ମିଶିଛି । ଏହି କ୍ଷୁଦ୍ର ଝରଣାର ଜଳସ୍ରୋତ ଯେଉଁଠାରୁ ସର୍ବଦା ଝରୁଛି, ତାର ୬୦ ମିଟର ଉପରକୁ ସେହିନାଳ କଡରେ ଏକ ଅନ୍ଧାରୁଆ ଗୁମ୍ଫା ଅଛି । ସେହି ଗୁମ୍ଫାଟି ପ୍ରାୟ ୩ ମିଟର ଉଚ୍ଚ X ୫ ମିଟର X ୪ ମିଟର ହେବ । ଗୁମ୍ଫା ମଧ୍ୟରେ ଏକ କ୍ଷୁଦ୍ର ଦ୍ୱାରପରି ବିୟର ଅଛି । ସେହି ଦ୍ୱାର ବାଟେ ଭିତରକୁ ଗଲେ ଆଉ ଏକ ଗୁମ୍ଫା ( ୪ ମିଟର X ୩ ମିଟର X ୨.୫ ମିଟର ଉଚ୍ଚ) ଦେଖାଯାଏ । ୨ୟ ଗୁମ୍ଫା ପରେ ଆଉ ଏକ ବଡ ଗୁମ୍ଫା ଦେଖାଯାଏ । ଗୁମ୍ଫାଗୁଡ଼ିକ ବାଦୁଡ଼ି ପୂର୍ଣ୍ଣ ଏବଂ ଦୁର୍ଗନ୍ଧ ଯୁକ୍ତ ହୋଇଥିବାରୁ ଅନ୍ୟ ଗୁମ୍ଫା ଗୁଡ଼ିକୁ ଯିବା ସମ୍ଭବ ହେଉନାହିଁ । ସ୍ଥାନୀୟ ଲୋକମାନେ ଏହିପରି ଭିତରକୁ ଭିତର ସାତୋଟି ଗୁମ୍ଫା ଥିବା କହନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ସବୁଗୁମ୍ଫା ମଧ୍ୟକୁ ଯାଇଥିବା କହନ୍ତି ।

ସପ୍ତମ ଗୁମ୍ଫାଟି ସବୁଠାରୁ ବଡ ବୋଲି କହିଥାନ୍ତି । ସେ ଗୁମ୍ଫାରେ ଏକ ଅଗଣା ପରି ସ୍ଥାନ ଅଛି । ସେଥିରେ ୫୦୦ ଲୋକ ଏକ ସଙ୍ଗେ ରହିପାରିବେ । କେତେକ କହନ୍ତି, ଏହି ୭ମ ଗୁମ୍ଫା ପରେ ଆଉ ଏକ ସୁଡଙ୍ଗ ଅଛି । ଏହି ସୁଡ଼ଙ୍ଗଟି ହିଡସରା ନିକଟସ୍ଥ ଦେଉଳଗାଁ ଗୁମ୍ଫା ସହିତ ଯୋଗ ହୋଇଛି । ଏହାକେବଳ କଳ୍ପନା ନା ସତ୍ୟ ଏ ପର୍ଯ୍ୟନ୍ତ କେହି ପରୀକ୍ଷା କରିନାହାନ୍ତି । କେହି କେହି ଏହା ଭୀମଦୁୟାଠାରେ ଯୋଗ ହୋଇଥିବା କହନ୍ତି ।

---

• *ଖଡ଼ିଆଳର ଇତିହାସ - ଶ୍ରୀମତୀ ରାଜଶ୍ରୀ ଦେବୀ ।*

ଭୀମତୁମ୍ବା:-

ନାକଟି ଦେଉଳ ବ୍ଲକ୍‌ର ଚତଚତି ଗ୍ରାମ ନିକଟସ୍ଥ ଏକ ବଡ ପଥର ଚଟାଣତଳେ ଏକ ବାମ୍ଫି ବା ଟାଙ୍କି ପରି ସ୍ଥାନରେ ସର୍ବଦା ସମପରିମାଣରେ ପାଣିଥାଏ । ଯେତେ ଖରା ହେଲେ ମଧ ପାଣି ସ୍ଥିର ରହେ, ଶୁଖେ ନାହିଁ । ଏହି ସ୍ଥାନଟି ବାଟଗାଁରୁ ଅନୁଗୋଳ ରାସ୍ତାରେ ଅଙ୍ଗାବିରା ଦେଇ ଗଲେ ଚତଚତି ଗ୍ରାମ ପଡେ । ଏହି ସ୍ଥାନଟି ଚତଚତି ଗ୍ରାମର ବାମପଟେ ଅବସ୍ଥିତ । ଆଖ ପାଖର ଲୋକମାନେ ମରୁଡ଼ି ପଡ଼ିଲେ ବା ଅନାବୃଷ୍ଟି ସମୟରେ ଏହି ସ୍ଥାନରେ ସମବେତ ହୋଇ କୀର୍ତ୍ତନ କରନ୍ତି ଓ ଇନ୍ଦ୍ରଦେବଙ୍କୁ ପୂଜା କରନ୍ତି । ସେହି ପୂଜା ସ୍ଥଳରୁ ଆସିଲାମାତ୍ରେ ବର୍ଷା ହୋଇଥାଏ ବୋଲି ଲୋକମାନଙ୍କର ବିଶ୍ୱାସ । କିମ୍ବଦନ୍ତୀ ଅଛି, ଗୁପ୍ତେଶ୍ୱର ଝରଣାରେ ଭୀମ ସ୍ନାନ କରୁଥିବା ସମୟରେ ତାଙ୍କର ମାତା କୁନ୍ତୀ ଦେବୀ ଆସିବାରୁ ସେ ଗୁପ୍ତେଶ୍ୱର ଗୁମ୍ଫାଠାରେ ପଶି ଭୀମ ତୁମ୍ବାରେ ବାହାରି ଥିଲେ । ସେଥିପାଇଁ ତୁମ୍ବା ଆକୃତିର ଟାଙ୍କିରେ ସର୍ବଦା ଜଳପୂର୍ଣ୍ଣ ହୋଇ ରହିଥାଏ । ଗୁପ୍ତେଶ୍ୱରଠାରୁ ଏହି ସ୍ଥାନରେ କୁଆ ଉଡିଯିବା ଦୂରତ୍ୱରେ ୨୧ କିଲୋମିଟର ହେବ ।

ଦେଉଳ ଘା:-

ଦେଉଳଘା ପର୍ବତ ନାକଟି ଦେଉଳ ବ୍ଲକ ଅନ୍ତର୍ଗତ ହିତସରା ଓ କର୍ଣ୍ଣ ଗ୍ରାମର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । ହିତସରା ଗ୍ରାମରୁ ଖରବେଳା ନାଳ ବା ଖାରବେଳ ନାଳକୂଳେ କୂଳେ ଅନ୍‌କାବେର୍ନି ବାଟ ଦେଇ କିମ୍ବା ହିତସରାଠାରୁ ବିନ୍ଦପୁର ଉପରଦେଇ ଏକ ଗିରିପଥ ଲୁବୁରୀ ଓ କୋଡାନାଳୀ ଆଡକୁ ଯାଇଛି । ସେହି ରାସ୍ତାର ଦକ୍ଷିଣକୁ ଦେଉଳଘା ପର୍ବତ ପଡେ । ପର୍ବତଟିର ଉଚ୍ଚତା ୩୨୫ ମିଟର । ଏହା ଦିଅଁଙ୍କଠାରେ ଓଳଗି ହେଉଥିବାରୁ ଏହାର ନାମକରଣ ଦେଉଳ ଘା ହୋଇଛି । ଏଠାରେ କେତେଗୁଡ଼ିଏ ବଡ଼ ବଡ଼ ଗୁମ୍ଫା ଅଛି । ପାଣ୍ଡବ ପାଞ୍ଚଭାଇ ଏହି ଗୁମ୍ଫାରେ କିଛି ସମୟ ଅତିବାହିତ କରିଥିଲେ ବୋଲି କୁହାଯାଏ । ଏହା ପାଣ୍ଡବମାନଙ୍କ ଅଜ୍ଞାତବାସ ସମୟର କଥା ।

ବର୍ତ୍ତମାନ ଯେଉଁସ୍ଥାନକୁ ଦେଓଳଘା କୁହାଯାଉଛି, ସେହି ସ୍ଥାନକୁ ହିତସରା ଗ୍ରାମଦେଇ ଖାରବେଳ ନାଳ ଓ ପଞ୍ଚୁପାଣ୍ଡବ ନାଳର ମଧ୍ୟବର୍ତ୍ତୀ ସ୍ଥାନରେ ଏକ ଜଙ୍ଗଲ ପଥଦେଇ ଯାଇ ହୁଏ । ଦୁଇ ବା ତତୋଽଧିକଥର ପଞ୍ଚୁପାଣ୍ଡବ ନାଳକୁ ପାର ହୋଇଯିବାକୁ ହୁଏ । ଉକ୍ତ ସ୍ଥାନଟି ଏକ ଅବବାହିକା ଅଞ୍ଚଳରେ ଗୋଟିଏ ୧୫ ମିଟରରୁ ୩୦ ମିଟର ଉଚ୍ଚ ପାହାଡର ଉପରି ଭାଗରେ ଅବସ୍ଥିତ । ଏଠାରେ ଏଲୋରାଗୁମ୍ଫା ପରି ଗୁମ୍ଫା ଦେଖାଯାଏ । ଏ ଗୁମ୍ଫାଗୁଡ଼ିକ ପ୍ରାକୃତିକ ଗୁମ୍ଫା । ବଡ ଗୁମ୍ଫାର ଆକାର ( ୩୦ ମିଟର X ୩ ମିଟର X ୩ ମିଟର) ହେବ । ଅନ୍ୟ ଗୁମ୍ଫାଗୁଡ଼ିକ ଛୋଟ ଛୋଟ ଆକାରର । ବଡ଼ ଗୁମ୍ଫା କଡେକଡେ ଉପରକୁ ଗଲେ ଅନ୍ୟ ଏକ ଛୋଟ ଗୁମ୍ଫା (୫ମିଟର X ୩ ମିଟର X ୩ମିଟର) । ଏହି ଗୁମ୍ଫା ତଳେ ଏକ ବଡ ପଥର ଅଛି । ଲୋକମାନେ ତାକୁ ପାଣ୍ଡବମାନଙ୍କର

ଘୋଡା ବୋଲି କହନ୍ତି । ସେହି ପଥର ଉପରେ ଦଣ୍ଡନାଚ-ବୀଣାକାରିଆର ବୀଣାପରି ଏକ ଲୌହ ନିର୍ମିତ ଯନ୍ତ୍ର ଅଛି । ତାକୁ ଘୋଡାର ଜିନ୍ ବୋଲି କହନ୍ତି । ସେଠାରେ ପାଣ୍ଡବମାନଙ୍କର ଖଣ୍ଡା ୨ଟି, ତରଓ୍ୱାଲ ଗୋଟିଏ, ଟାଙ୍ଗିଆ ୪ଟି, ଶାବଳ ୨ଟି ପ୍ରାଚୀନ କାଳରୁ ରଖାହୋଇ ପୂଜା ହେଉଛି । ଏକ ପଥର ଘୋଡା ଉପରେ ଜିନ୍ କିମ୍ବା ଲୁହାର କୁଆଳି ପରି ଶେଷରେ ୨ଟି ଚେନ୍ ଓ ମଝିରେ ଗୋଟିଏ ଲୁହା ଚେନ୍ ଝୁଲୁଛି । ଘୋଡା ଉପରେ ବସିବା ଗଦି ଓ ଘୋଡାର ଲଗାମ ରହିଛି । ସ୍ଥାନଟି ବିପଦ ସଙ୍କୁଳ ଓ ବ୍ୟାଘ୍ର ହସ୍ତୀଙ୍କର ଆଶ୍ରୟ ସ୍ଥଳ ।

ଲେଖକ ନିଜେ ଏକ ବଡ ଭାଲୁ (କଳା କର୍ଷି ଛତାପରି ହେବ) ଗୁମ୍ଫାର ପାଦଦେଶରେ ଦେଖିଥିଲେ । ଗୁମ୍ଫା ଭିତରେ ସଦ୍ୟ ମଳତ୍ୟାଗରୁ ଜଣାଯାଉଥିଲା କିଛି ସମୟ ପୂର୍ବରୁ ସେ ସେଠାରେ ଆଶ୍ରୟ ନେଇଥିଲା । ସେଠାରେ ଗୋଟିଏ ଛୋଟ (ଅଧମିଟର ବ୍ୟାସ) ଗର୍ତ୍ତରେ ଝିଙ୍କ ବାସକରୁଥିବାର ଜଣାପଡ଼ିଲା । କଳାମୁଖା ବାନର ମଧ ସେଠାରେ ଦଳ ଦଳ ହୋଇ ଦେଖାଯାନ୍ତି । ନାଳଗାଈ ଏହି ଜଙ୍ଗଲର ଏକ ବିଶେଷ ଆକର୍ଷଣ । ସେହି ସ୍ଥାନର ଉପରକୁ ପଥର ଉପରେ ବାଘୁଆମହୁ ବସା ସବୁ ସମୟରେ ଦେଖିବାକୁ ମିଳେ । ଏହି ପାହାଡ ଶିଖର ଚଟାଣ ଉପରେ ଗୃଧ୍ର ପକ୍ଷୀ ଦଳବାନ୍ଧି ରହିଥାନ୍ତି ।

କିମ୍ବଦନ୍ତୀରୁ ଜଣାଯାଏ, ସେହି ଅଞ୍ଚଳର ଲୋକମାନଙ୍କର ଆବଶ୍ୟକତାକୁ ନେଇ ହଳଦୀଗୁଣ୍ଡ, ଗୁଆ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଥୋଇ ପଞ୍ଚୁପାଣ୍ଡବଙ୍କୁ ବା ଇଷ୍ଟଦେବତାଙ୍କୁ ନମସ୍କାର କଲେ ତା ପରଦିନ ସେଠାରେ ସୁନା ଅଳଙ୍କାର କିମ୍ବା ବିବାହ ଭୋଜିର ହଣ୍ଡା, ଚାମଚ, ଡଙ୍କୀ ପ୍ରଭୃତି ମାନସିକ ଅନୁସାରେ ରଖାହୋଇଥାଏ । ସେହି ଅଳଙ୍କାର ପ୍ରଭୃତି ଝିଅଦେଖା, ବିବାହ, ବ୍ରତ ଆଦିରେ ବ୍ୟବହାର କରି ପୁଣି ସେହି ସ୍ଥାନରେ ଫେରାଇବାକୁ ହୁଏ । କିନ୍ତୁ କେତେଜଣ ଅସାଧୁ ବ୍ୟକ୍ତି ଆଉ ନଫେରେଇ ଅସତ୍ୟ ହୋଇ ଥିବାରୁ ସେହି ପ୍ରଥା ବନ୍ଦ ହୋଇଯାଇଛି ।

ଉଷା କୋଠୀ:-

ଦେଉଳଗାର ଉଷାକୋଠୀ ନାମରେ ପରିଚିତ ସ୍ଥାନଟି ପାଣ୍ଡବମାନଙ୍କର ବନବାସ ସମୟର ଏକ ଗୁମ୍ଫା । ସେହି ସ୍ଥାନରେ ପାଣ୍ଡବମାନେ କିଛିଦିନ ବସବାସ କରିଥିବାର ଲୋକଶ୍ରୁତିରୁ ପ୍ରକାଶ । ଏହିଠାରେ ସେମାନେ ବସବାସ କରି ଦେଉଳଗା ପାହାଡରେ ଅସ୍ତ୍ରଶସ୍ତ୍ର ଲୁଚାଇ ରଖୁଥିଲେ । ଏହି ସ୍ଥାନକୁ ଯିବାକୁ ହେଲେ ନାକଟି ଦେଉଳ ବ୍ଲକଠାରୁ ବାଟଗା ମଧ ଦେଇ ହିତସରା ଗ୍ରାମରେ ପହଞ୍ଚି ହୁଏ । ହିତସରା ଗ୍ରାମ ଉପରକୁ ଖରବେଳା ନାଳ ବହିଯାଇଛି । ସେହି ନାଳ ଓ ତାର ଉପନାଳ ପଞ୍ଚୁପାଣ୍ଡବ ନାଳର ମଧବର୍ତ୍ତୀ ସ୍ଥାନରେ ଏକ ପାଦଚଲା ରାସ୍ତାରେ ତିନି କିଲୋମିଟର ଯିବାକୁ ହୁଏ । ସେହି ସ୍ଥାନରେ ପୁଣି ପଞ୍ଚୁପାଣ୍ଡବ ନାଳ ପାରହୋଇ ଏକ ଟାଙ୍ଗର ପଥର ଉପରେ ୩୦୦ ମିଟର ଗଲେ ଏକ ଅନୁଚ୍ଚ ପାହାଡ

ଦୃଷ୍ଟିଗୋଚର ହୁଏ । ସେହି ପାହାଡରେ ଏହି ଉଷାକୋଠୀ ଅବସ୍ଥିତ । ସେ ସ୍ଥାନର ଗୁମ୍ଫା ଏକ ବଡ ପୋଟିକୋ ପରି ୮ମିଟର ବାହାରକୁ ଝୁଲିରହିଛି । ଏହା ଲମ୍ବରେ ୨୬ ମିଟର ଉଚ୍ଚତା ପ୍ରାୟ ୮ ମିଟର ହେବ । ତାର କାନ୍ଥର ୨ଟି ସ୍ଥାନରେ ପ୍ରାଚୀନ ଚିତ୍ର ଦେଖାଯାଏ । ଗୋଟିଏ ସ୍ଥାନରେ ଆଗପଛ ହୋଇ ବସିଥିବା ଦୁଇଟି ଚଢ଼େଇର ଚିତ୍ର । ପ୍ରଥମ ଚଢ଼େଇ ଅନ୍ୟଟିକୁ ଏକ ସ୍ପ୍ରିଙ୍ଗ୍ ପରି ରଶିରେ ବାନ୍ଧି ଟାଣିଲା ପରି ଦିଶୁଛି । ଅନ୍ୟ ଏକ ସ୍ଥାନରେ ଏକ ଶୃଙ୍ଗ ବିହୀନ ପଶୁ ପଛରେ ଏକ ଶିକାରୀର ଦୃଶ୍ୟ ଅଙ୍କିତ ହୋଇଛି । ଶିକାରୀର ଉପର ଅଂଶ ପରିଷ୍କାର ଦିଶୁନାହିଁ । ଏସବୁ ଚିତ୍ରରେ ସୁନ୍ଦରଗଡର ମାଣିକମୁଣ୍ଡା ଚିତ୍ରପରି ରଙ୍ଗ ଦିଆହୋଇ ନାହିଁ । ଏହା କେବଳ ଖୋଦେଇ ହୋଇଛି ।

ଏହି ଗୁମ୍ଫାର ବାମ କଡ଼ରେ ଆଉ ଏକ କ୍ଷୁଦ୍ର ଗୁମ୍ଫା ଅଛି (୨ ମିଟର X ୧ ମିଟର X ୧.୫ ମିଟର) । ଏହାର ବାମପଟ କଡ଼ରେ (୬୦ ସେ.ମି. X ୧୫ ସେ.ମି.) ଅସ୍ପଷ୍ଟ ଭାବେ ୨ଟି ସ୍ଥାନରେ ଲେଖାମାନ ରହିଛି । ଅକ୍ଷରଗୁଡ଼ିକ ଶିଉଳି ଓ ଖରାବର୍ଷାରେ ନଷ୍ଟ ହୋଇଥିବାରୁ ପଢ଼ି ହେଉନାହିଁ । ଏହି ଉଷାକୋଠୀର ଦକ୍ଷିଣ ଭାଗରେ ଅନ୍ୟ ଏକ ଗୁମ୍ଫା (୧୨ ମିଟର X ୫ ମିଟର X ୬ ମିଟର) ଅଛି । କିନ୍ତୁ ସେଠାରେ କୌଣସି ଚିତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ଏହି ସ୍ଥାନରେ ମଧ ଭାଲୁ ପ୍ରଭୃତି ହିଂସ୍ରଜନ୍ତୁ ସବୁ ସମୟରେ ରହୁଥିବାର ପ୍ରମାଣ ମିଳେ । ଏଠାରେ ପ୍ରାକ୍ ଐତିହାସିକ ଗବେଷକ ଗବେଷଣା କଲେ ଅଧିକ ତଥ୍ୟ ମିଳି ପାରିବ ।

***

## ପଞ୍ଚମ ପରିଚ୍ଛେଦ

# ରେଢ଼ାଖୋଲର ପ୍ରତ୍ନତତ୍ତ୍ୱ (୧)

ବିଞ୍ଚେଶ୍ୱର ମନ୍ଦିରଃ- ପ୍ରାଚୀନ ସଭ୍ୟତା ଓ ସଂସ୍କୃତି ପ୍ରାଚୀନ ନଦୀ କୂଳରେ ଗଢ଼ି ଉଠିଥାଏ । କାଳର କରାଳକବଳରେ କେତେକ ନଦୀଗର୍ଭରେ ଲୀନ, କେତେକ ଅର୍ଦ୍ଧ ଭଗ୍ନ ଅବସ୍ଥାରେ ଓ ଆଉ କେତେକ ଭଗ୍ନ ସ୍ତୂପରେ ପରିଣତ ହୋଇ ମୂକସାକ୍ଷୀ ରୂପେ ରହିଥାଏ । ରେଢ଼ାଖୋଲର ନାକ୍‌ଟି ଦେଉଳ ଅଞ୍ଚଳରେ ବ୍ରାହ୍ମଣୀନଦୀ ଉପତ୍ୟକାରେ ବହି ଯାଇଥିବା ବ୍ରାହ୍ମଣୀର ଉପନଦୀ ଟିକିରା ଏକ ପ୍ରଧାନ ନଦୀ । ଏହି ଟିକିରାନଦୀ ଉପତ୍ୟକାରେ କେତେକ ମନ୍ଦିରର ଅବସ୍ଥିତି ଓ ଭଗ୍ନାବସ୍ଥାରୁ ଏହି ଅଞ୍ଚଳର ସଭ୍ୟତା ଓ ସଂସ୍କୃତିର ଆଭାସ ମିଳେ । ଟିକିରା ନଦୀର ଦକ୍ଷିଣ କୂଳରେ କୁଆଁମରା ନିକଟରେ ଦଣ୍ଡାୟମାନ ବିଞ୍ଚେଶ୍ୱର ଶିବ ମନ୍ଦିର ।

ବିଞ୍ଚେଶ୍ୱର ଶିବ ମନ୍ଦିରର ନିର୍ମାଣକୁ ନେଇ ଏକ କିମ୍ବଦନ୍ତୀ ଅଛି । ପୂର୍ବେ ରେଢ଼ାଖୋଲର କୁଆଁମରା ଅଞ୍ଚଳ ଏକ ଦୁର୍ଗପରି ଅଞ୍ଚଳ ଥିଲା । ଚାରିପଟରେ ପ୍ରାଚୀର ସଦୃଶ ପର୍ବତ ଶ୍ରେଣୀ, ମଝିରେ ବହିଯାଇଛି ଟିକିରା ନଦୀ । ପୂର୍ବେ ଏହି ଅଞ୍ଚଳ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଏହାର ସମତଳ ଅଞ୍ଚଳ ବିଭିନ୍ନ ପ୍ରକାର ଫଳ ଗଛରେ ପରିପୂର୍ଣ୍ଣ ଥିଲା । ବାମଣ୍ଡା ଅଞ୍ଚଳରୁ ଉତ୍ତର ପୂର୍ବରେ ଥିବା  ପାହାଡ ଶ୍ରେଣୀ ମଧ୍ୟରେ ଗିରି ସଙ୍କଟ ଦେଇ ଆମ୍ବଝରୀନାଳ କୂଳେ କୂଳେ ଏକରାସ୍ତା ଏବଂ କଟେସର ଘାଟି ମଧ୍ୟରେ ତାଳଚେର, ଅନୁଗୋଳ, ପାଲଲହଡାକୁ ଚଲାପଥ ରହିଛି । ନାକଟି ଦେଉଳରୁ ଏ ସ୍ଥାନଟି ୧୬ କି.ମି. ଦୂର, ଛୋଟ ଛୋଟ ନାଳ ଅତିକ୍ରମ କରି ମାନକୁଣ୍ଡା ଜଙ୍ଗଲ ତଳେ ତଳେ ଯିବାକୁ ହୁଏ । ମାନକୁଣ୍ଡା ରେଢ଼ାଖୋଲର ବଡ ଜଙ୍ଗଲ । ସେଥିପାଇଁ ଲୋକେ କହନ୍ତିଃ- ''ଅଖୋଜା ବାମଣ୍ଡା, ଏକା ମାନକୁଣ୍ଡା'' । ଅର୍ଥାତ୍ ଏକା ମାନକୁଣ୍ଡା ଜଙ୍ଗଲ ବାମଣ୍ଡାର ସମସ୍ତ ଜଙ୍ଗଲଠାରୁ ବଳି ।

ଏହି ସମତଳ ଅଞ୍ଚଳରୁ ମହୁ, ଲାଖ, ଝୁଣା, ଟସରଖୋସା ପ୍ରଭୃତି ନେବାପାଇଁ ବିଭିନ୍ନ ଅଞ୍ଚଳରୁ ବ୍ୟବସାୟୀ ଆସିଥାନ୍ତି । ସେମାନେ ଦଳ ଦଳ ହୋଇ ଟିକିରା ନଦୀ କୂଳରେ ରାନ୍ଧି ଖାଆନ୍ତି । ବର୍ତ୍ତମାନ ଯେଉଁସ୍ଥାନରେ ମନ୍ଦିର ହୋଇଛି, ସେଠାରେ ବାଉଁଶ ବୁଦାର ଜଙ୍ଗଲ ଥିଲା । ଟିକିରା ନଦୀର ବାମ କୂଳରେ ଗଉଡମାନେ ଗାଈ ଚରାଇଥାନ୍ତି । ଗୋଟିଏ ଗାଈ ପ୍ରତିଦିନ ଆସି ସେହି ବାଉଁଶ ମୂଳେ ଠିଆ ହୋଇଥାଏ । ଏବଂ ତାର ପହ୍ନାରୁ କ୍ଷୀର ନିଃଶେଷ ହେବା ଯାଏ ସେ ଧୀରସ୍ଥିର ଭାବେ ଠିଆ ହୋଇଥାଏ । ପୁଣି ଚାଲିଯାଏ ତାର ଗାଈଗୋଠକୁ । ଏହିପରି ସେହି ସୌଦାଗର ଦୁଇଜଣ ଅନେକଥର ଦେଖିଛନ୍ତି କିନ୍ତୁ କିଛି ଜାଣି ପାରି ନଥିଲେ । ଦିନେ ଭରା ନଦୀରେ ସେ ଗାଈଟି ନଦୀ

ପାର ହୋଇ ଆସି ସେହି ବାଉଁଶ ବୁଦା ମୂଳେ ଠିଆ ହୋଇଚାଲିଗଲା । ସୌଦାଗର ଦୁଇଜଣ ଦେଖିଲେ କ୍ଷୀର ଝରି ପଡିଥାଏ, ଏକ ଲିଙ୍ଗ ଆକୃତି ଶିଳା ଉପରେ । ରାତ୍ରରେ ବିଙ୍କେଶ୍ବର ବାବା ସପ୍ନରେ ଆସି ଦୁଇ ସୌଦାଗରଙ୍କୁ କହିଲେ, ବତ୍ସ ! ସେ ଗାଈ ଯେଉଁଠି କ୍ଷୀର ଝରାଉଥିଲା ମୁଁ ସେଠାରେ ଅଛି । ମୁଁ ସେଠାରେ ବ୍ୟାଧିଗ୍ରସ୍ତ ଜନତାଙ୍କୁ ବ୍ୟାଧିମୁକ୍ତ କରିବା ପାଇଁ ଓ ଦୁର୍ଗତ ଲୋକଙ୍କୁ ରକ୍ଷା କରିବା ପାଇଁ ଉଭା ହୋଇଛି ।

ପରଦିନ ସ୍ଥାନୀୟ ସାମନ୍ତ ରାଜାଙ୍କୁ ଏ ବିଷୟରେ କହିଲାରୁ ସେ ପ୍ରତ୍ୟକ୍ଷ ଆସି ଦେଖିଗଲେ । ଉତ୍କଳର ରାଜାଙ୍କୁ ଏ ବିଷୟ ଜଣାଇ ଦିଆଗଲା । ସୌଦାଗର ଦୁଇଜଣ ମନ୍ଦିର କାର୍ଯ୍ୟ ଆରମ୍ଭ କଲେ । ରାଜା ତାଙ୍କର କାରିଗରମାନଙ୍କୁ ଆଦେଶ ଦେଲେ ମନ୍ଦିର ସମ୍ପୂର୍ଣ୍ଣ କରିବାକୁ । ମନ୍ଦିର କାର୍ଯ୍ୟ ଠିକ୍ ସମୟରେ ସରିଲା ।

ଏହି ମନ୍ଦିର ନିର୍ମାଣର କିମ୍ବଦନ୍ତୀକୁ ବିଚାରକୁ ନେଲେ ଏହା ସତ୍ୟ ହୋଇପାରେ । ଏହାକୁ କୌଣସି ବ୍ୟବସାୟ ବାଣିଜ୍ୟ କରୁଥିବା ବ୍ୟକ୍ତିଙ୍କ ଦ୍ୱାରା ଏବଂ ରାଜଅନୁଗ୍ରହରେ ନିର୍ମାଣ କରାଯାଇଥାଇପାରେ । ଏହି ମନ୍ଦିରର ନିର୍ମାଣ କାଳ ନିର୍ଣ୍ଣୟ କରିବାକୁ ହେଲେ ତାର ପାର୍ଶ୍ୱଦେବଙ୍କର ମୂର୍ତ୍ତିର ପ୍ରାଚୀନତା ଓ କେଉଁ କେଉଁ ରାଜା ଶୈବ ଓ ଶାକ୍ତ ଥିଲେ ବିଚାରକୁ ନିଆଯାଇପାରେ ।

ମନ୍ଦିର ଉଚ୍ଚ ନହେଲେ ମଧ୍ୟ ଅତି ଛୋଟ ନୁହେଁ । ଏହା ସିଧା ସିଧା ପଥରରେ ନିର୍ମିତ । କାରୁକାର୍ଯ୍ୟ ନାହିଁ, କିନ୍ତୁ ମନ୍ଦିର ଗର୍ଭଗୃହକୁ ଲାଗି ଜଗମୋହନ ବା ମୁଖଶାଳା ଅଛି । ମୁଖଶାଳା ସମ୍ମୁଖରେ ନାଟମଣ୍ଡପ । ଏହି ନାଟମଣ୍ଡପ କାଠ ବାଉଁଶରେ ନିର୍ମିତ ଓ ଛପରଟି ଖପର । ସମ୍ଭବତଃ ନାଟମଣ୍ଡପ ପରେ ନିର୍ମିତ ହୋଇଛି । ସେଠାରେ ନନ୍ଦୀ ବୃଷଭ ରହିଛନ୍ତି । ତାର ସମ୍ମୁଖରେ କାଠ ଚମ୍ପାଗଛ । ଲୋକମାନଙ୍କ ମୁଖରୁ ଶୁଣାଯାଏ ଯେ, ଏହି ମନ୍ଦିର ହେବା ପୂର୍ବରୁ କାଠଚମ୍ପା ଗଛଟି ଏଠାରେ ରହିଛି ।

ମନ୍ଦିର ଓ ଜଗମୋହନ ଦୁଇଟି ସମ ଉଚ୍ଚତା ବିଶିଷ୍ଟ ପରି ଦିଶିଲେ ମଧ୍ୟ ଗର୍ଭଗୃହଠାରୁ ମୁଖଶାଳା ଛୋଟ ଅଛି । ମୁଖଶାଳାରେ ଓ ଜଗମୋହନରେ ଗ୍ରହପଟି ଅଛି । ଏହିପରି ମନ୍ଦିର କୌଣସିଠାରେ ଦେଖାଯାଏ ନାହିଁ । ମୁଖଶାଳାର ଗ୍ରହପଟିରେ ନବଗ୍ରହଶିଳା ଅଛି । କିନ୍ତୁ ଗର୍ଭଗୃହଦ୍ୱାର ଉପରେ ଗ୍ରହଶିଳାରେ ଆଠଟି ଗ୍ରହଥିଲେ, ବର୍ତ୍ତମାନ ସାତୋଟି ଅଛନ୍ତି । ଅଷ୍ଟଗ୍ରହ - ଯଥା:- ରବି, ସୋମ, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ, ଗ୍ରହମାନଙ୍କର ମୂର୍ତ୍ତି ଖୋଦିତ ହୋଇଛି । ଗ୍ରହପୂଜା ବିଧାନ ଅତି ପ୍ରାଚୀନ । ଅଷ୍ଟୋତ୍ତରି ଗ୍ରହ ଗଣନାରେ ଗ୍ରହ ହେଲେ ଆଠୋଟି ଓ ବିଂଶୋତ୍ତରୀ ମତରେ ନବଗ୍ରହ । ମନ୍ଦିର ନିର୍ମାଣକର୍ତ୍ତା ସମ୍ଭବତଃ ଅଷ୍ଟୋତ୍ତରୀ ମତାବଲମ୍ବୀ ଥିଲେ । କେତୁ ଗ୍ରହକୁ ଗ୍ରହଣ କରି ନଥିଲେ, କିନ୍ତୁ ମୁଖଶାଳାରେ ନବଗ୍ରହ ରହି ଏପରି କାହିଁକି ହୋଇଛି ଜଣା ଯାଉନାହିଁ । ଗର୍ଭ ଗୃହ ଓ ମୁଖଶାଳା ଏକ ସମୟରେ ନିର୍ମିତ ହୋଇନଥିବା ଜଣାଯାଏ । ସମ୍ଭବତଃ

ଅଷ୍ଟୋଉରୀ ବିଂଶୋଉରୀ ମତ ବାଦର ମିଳନ ସମୟରେ ନିର୍ମିତ ହୋଇଛି । କିମ୍ୱା ଗର୍ଭଗୃହ ମୁଖଶାଳା ଠାରୁ ପ୍ରାଚୀନ ବୋଲି ମନେହୁଏ ।

ଭୁବନେଶ୍ୱରରେ ଶତ୍ରୁଘ୍ନେଶ୍ୱର ଓ ଭରତେଶ୍ୱର ମନ୍ଦିରର ଦ୍ୱାରବନ୍ଧ ଉଉରରେ ଗ୍ରହପାଟ ବା ଶିଳା ନାହିଁ । ଗ୍ରହପାଟ ଲକ୍ଷ୍ମଣେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରରେ ଅଛି । ପରନ୍ତୁ ଏହି ଗ୍ରହପାଟରେ ଅଷ୍ଟାଗ୍ରହ ଶିଳା ବିଦ୍ୟମାନ । ମୁକ୍ତେଶ୍ୱର ଓ ପରବର୍ତ୍ତୀ କାଳର ମନ୍ଦିର ସମୂହରେ ନବଗ୍ରହ ଶିଳା ଅଛି । ମୁକ୍ତେଶ୍ୱର ମନ୍ଦିରର ନିର୍ମାଣକାଳ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ମଧ୍ୟ ଭାଗ ବୋଲି ନିର୍ଣ୍ଣିତ କରାଯାଇଛି । ରାଜାରାଣୀ ମନ୍ଦିରରେ ନବଗ୍ରହ ଶିଳା ସହିତ ଅଷ୍ଟଦିଗପାଳଙ୍କ ମୂର୍ତ୍ତି ବିଦ୍ୟମାନ । ରାଜାରାଣୀ ମନ୍ଦିରର ନିର୍ମାଣକାଳ ଏକାଦଶ ଶତାବ୍ଦୀର ପ୍ରଥମ ଭାଗ । ବ୍ରହ୍ମେଶ୍ୱର ମନ୍ଦିରର ନିର୍ମାଣ କାଳ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀର ତୃତୀୟ ପାଦ । ସେଥିରେ ନବଗ୍ରହ ଶିଳା ବିଦ୍ୟମାନ ।

ଟିକିରା ଉପତ୍ୟକାର ବିଘ୍ନେଶ୍ୱର ମନ୍ଦିର ମୁକ୍ତେଶ୍ୱର ମନ୍ଦିର ପୂର୍ବବର୍ତ୍ତୀ ବୋଲି ଧରାଯାଇ ପାରେ । ସମ୍ଭବତଃ ଏହି ମନ୍ଦିର ଖ୍ରୀଷ୍ଟିୟ ନବମ ଶତାବ୍ଦୀରେ ନିର୍ମିତ । ଆମେ ପୂର୍ବରୁ ଆଲୋଚନା କରିଛୁ ଏହି ଅଞ୍ଚଳରେ ସୁଲକିମାନେ ଓ ଜମଗର୍ଣ୍ଣ ମଣ୍ଡଳର ତୁଙ୍ଗମାନେ ଶାସନ କରୁଥିଲେ । ଏମାନେ ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ପ୍ରଥମାର୍ଦ୍ଧ ଓ ନବମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଠାରୁ ଦଶମ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଶାସନ କରୁଥିଲେ ।

ବ୍ରାହ୍ମଣୀର ଉପନଦୀ ଟିକିରା । ବ୍ରାହ୍ମଣୀ ଉପତ୍ୟକାରେ ତାଳଚେରଗଡ ଠାରୁ ୧୨ କି.ମି. ଦୂର 'କୋଆଲୁ' ଗ୍ରାମରେ କେତେଗୁଡ଼ିଏ ମୁଖଶାଳା ବିହୀନ ମନ୍ଦିର ଅଛି । ଶୁଲ୍‌କି ବଂଶୀୟ ରାଜାମାନଙ୍କର ତମ୍ବାପଟାରେ ତାଙ୍କର ରାଜଧାନୀ କୋଦାଳକର ଉଲ୍ଲେଖ ଅଛି । କୋଦାଳକର ଅପଭ୍ରଂଶ ଶବ୍ଦ ''କୁଆଳୁ'' କୁଲମରାଠାରୁ କଟେସର ଘାଟିବାଟେ ଗଲେ ''କୁଆଳୁ'' ଅଧିକ ବାଟନୁହେଁ । ଢେଙ୍କାନାଳର ହିନ୍ଦୋଳରୁ ମିଳିଥିବା ତାମ୍ରଶାସନ ରଣସ୍ତମ୍ଭଙ୍କର ପ୍ରପୁତ୍ର ଦ୍ୱିତୀୟ କୁଳସ୍ତମ୍ଭ ଦାନ କରିଥିଲେ । ସେଥିରେ ରଣସ୍ତମ୍ଭ ଭଗବାନ ସଦାଶିବଙ୍କ ପାଇଁ ବହୁତ ମନ୍ଦିର ନିର୍ମାଣ କରିଥିବା ପ୍ରମାଣ ମିଳେ । ରାଜଧାନୀ କୁଆଳଠାରେ ଆଠଗୋଟି ଭଗ୍ନାବସ୍ଥାର ମନ୍ଦିର ଏହାର ପ୍ରମାଣ ।

ଯମଗର୍ତ୍ତ ମଣ୍ଡଳର ତୁଙ୍ଗ ଶାସକମାନଙ୍କ ମଧ୍ୟରୁ ବିନୀତ ତୁଙ୍ଗ (ଦ୍ୱିତୀୟ) ଶିବଭକ୍ତ ଥିଲେ । ତାମ୍ର ଶାସନରୁ ଜଣାଯାଏ, ସେ ଭୌମରାଜା ଶିବକର ଦେବ (୩ୟ)ଙ୍କର ଖ୍ରୀ ୮୮୫ରେ ସାମନ୍ତ ରାଜା ଥିଲେ । ଶୁଲ୍‌କିମାନଙ୍କ ମନ୍ଦିରରେ ମୁଖଶାଳା ନଥିବାରୁ ବିଘ୍ନେଶ୍ୱର ମନ୍ଦିରରେ ମୁଖଶାଳା ସଂଯୁକ୍ତ । ତେଣୁ ଏହା ବିନୀତ ତୁଙ୍ଗଙ୍କ ସମୟରେ ନିର୍ମିତ ହୋଇଥିବା ଅନୁମାନ କରାଯାଏ । ମନ୍ଦିରଟି ନବମ ଶତାବ୍ଦୀରେ ନିର୍ମିତ ।

ବିଘ୍ନେଶ୍ୱର ମନ୍ଦିରର ଦକ୍ଷିଣ ପଟରେ ପାର୍ଶ୍ୱଦେବତା ରୂପେ ଗଣେଶ ବିଦ୍ୟମାନ । ଦକ୍ଷ ଦୁଇ ହସ୍ତରେ ଉପରେ ପାଶ, ନିମ୍ନ ଭଗ୍ନ, ବାମ ହସ୍ତ ଦ୍ୱୟରେ ଉପରେ ଫୁଲ,

ନିମ୍ନରେ ଲଡୁ ଧାରଣ କରିଛନ୍ତି । ଏହା ବାମାବର୍ତ୍ତ ମୂର୍ତ୍ତି । ଗଣେଶଙ୍କର ବାହାନ ମୂଷିକ ନାହାନ୍ତି । ପଶ୍ଚିମ ପାର୍ଶ୍ୱରେ କାର୍ତ୍ତିକେୟ ବିଦ୍ୟମାନ । ଦକ୍ଷ କାର୍ତ୍ତିକେୟଙ୍କ ଉର୍ଦ୍ଧ୍ୱ ହସ୍ତରେ କୁଠାର ଓ ନିମ୍ନରେ ଗଦା । ଉର୍ଦ୍ଧ୍ୱସ୍ତ ବାମ ହସ୍ତରେ ଡମ୍ବରୁ, ନିମ୍ନ ହସ୍ତ କୁକୁଡ଼ା ଉପରେ ନ୍ୟସ୍ତ । ଉତ୍ତର ପାର୍ଶ୍ୱରେ ଥିବା ପାର୍ବତୀ ମୂର୍ତ୍ତିକୁ 'ମନସା' ଦେବୀ ବୋଲି କୁହାଯାଏ । ମୂର୍ତ୍ତିଟି ଚତୁର୍ଭୁଜା । ଉର୍ଦ୍ଧ୍ୱସ୍ଥ ଦକ୍ଷ ହସ୍ତରେ ଖଡ଼୍ଗ ଓ ନିମ୍ନ ହସ୍ତରେ ପଦ୍ମନାଡ ସହ କଢ଼ । ଉପରିସ୍ଥ ବାମ ହସ୍ତରେ ପଦ୍ମ ବା ମଶାଲ ଓ ନିମ୍ନ ହସ୍ତ ଭଗ୍ନ ।

ଦକ୍ଷିଣ ପଟ ବାହାର କାନ୍ଥର ଠଣାରେ ଏକ ଯୁଗଳ ଉମା - ମହେଶ୍ୱର ମୂର୍ତ୍ତି ବିଦ୍ୟମାନ । ଏହି ଉମା - ମହେଶ୍ୱର ମୂର୍ତ୍ତି ଠିକ୍ ଅବିକଳ ଖିଚିଙ୍ଗରେ ଥିବା ଦଶମ ଶତାବ୍ଦୀର ମୂର୍ତ୍ତି ପରି । ଖିଚିଙ୍ଗ ମୂର୍ତ୍ତିରେ ମହେଶ୍ୱର ପଦ୍ମ ଉପରେ ଉପବିଷ୍ଟ । ଦକ୍ଷପାଦ ତଳକୁ ଝୁଲିଛି ଓ ବାମ ଜଂଘ ଉପରେ ଉମା ବସିଛନ୍ତି । ଉମାଙ୍କର ଦକ୍ଷ ହସ୍ତ ମହେଶ୍ୱରଙ୍କ ଗଳାପଛପଟେ ଡାହାଣ ବାହୁରେ ଲାଗିଛି । ବାମ ହସ୍ତରେ ପୁଷ୍ପ ଧରିଛନ୍ତି ।

ଏଠାରେ ମହେଶ୍ୱର ମୂର୍ତ୍ତି ଚତୁର୍ଭୁଜ ବିଶିଷ୍ଟ ଦକ୍ଷହସ୍ତ ଉପରେ ପଦ୍ମ, ନିମ୍ନ ହସ୍ତ ବରଦମୁଦ୍ରା । ବାମ ହସ୍ତ ଉପରେ ତ୍ରିଶୂଳ ଓ ନିମ୍ନ ହସ୍ତ ଉମାଙ୍କର ବାମ ବକ୍ଷର ସ୍ତନ ସ୍ପର୍ଶ କରିଛନ୍ତି । ଉପର ଦୁଇ କଡରେ ଉଡନ୍ତା ଗନ୍ଧର୍ବ । ଉମାଙ୍କ ହସ୍ତ ଶିବଙ୍କ ଡାହାଣ ସ୍କନ୍ଧରେ ବାମ ହସ୍ତ ସର୍ପ ମୁଣ୍ଡରେ ରହିଛି । ଦ୍ୱିଭୂଜା । ବାମଗୋଡ ତଳକୁ ଝୁଲାଇଛନ୍ତି ।

ମନ୍ଦିର ପଶ୍ଚାଦ ଭାଗରେ ଏକ ଚାମୁଣ୍ଡା ମୂର୍ତ୍ତି ଗୋଟିଏ ଛୋଟ ଘରେ ଅଛନ୍ତି । ଅନ୍ୟାନ୍ୟ ଚାମୁଣ୍ଡା ମୂର୍ତ୍ତି ପରି ମୁଣ୍ଡମାଳରେ ଶୋଭିତ । ଦେବୀ ଚତୁର୍ଭୁଜା ବାମ ନିମ୍ନ ହସ୍ତରେ ପାନପାତ୍ର । ଉପର ଭଗ୍ନ । ଉପର ଦକ୍ଷିଣ ହସ୍ତରେ ଖଡ଼୍ଗ ଓ ନିମ୍ନ ଦକ୍ଷିଣ ହସ୍ତ ଭଗ୍ନ । ଚାମୁଣ୍ଡା ଶବ ଉପରେ ଆସୀନା ।

**ସୁହାଣୀ:-**

ପ୍ରାଚୀନ ରେଢ଼ାଖୋଲ ରାଜ୍ୟ ଉତ୍ତର ପୂର୍ବରେ ବ୍ରାହ୍ମଣୀନଦୀ ଓ ଦକ୍ଷିଣ ପଶ୍ଚିମରେ ମହାନଦୀ ମଧ୍ୟରେ ଅବସ୍ଥିତ । ମହାନଦୀ ଅବବାହିକାରେ ସୁରୁବାଲି ନାଳ ମହାନଦୀର ଏକ ଉପନାଳ । ଏହି ନାଳ ରେଢ଼ାଖୋଲ ରାଜ୍ୟ ମଧ୍ୟରୁ ବାହାରି ସୋନପୁର ରାଜ୍ୟ ମଧ୍ୟରେ ପ୍ରବାହିତ ହୋଇ ମହାନଦୀରେ ମିଶିଛି । ରେଢ଼ାଖୋଲ ରାଜ୍ୟ ମଧ୍ୟରେ ବଂଶାଜାଲ ଏହି ନଦୀ କୂଳରେ ଅବସ୍ଥିତ ଓ ସେଠାରେ ଏକ ଛୋଟ ପାର୍ବତ୍ୟ ଝରଣା ଗ୍ରାମ ପତନର ୩୦ ମିଟର ଉଚ୍ଚରୁ ପ୍ରବାହିତ । ସେହି ସ୍ଥାନଟି ଏକ ପାହାଡର ଖୋଲ ସଦୃଶ । ଏହା ସୁହାଣୀ ଦେବୀଙ୍କର ଆସ୍ଥାନ ।

ବଂଶାଜାଲ ଗ୍ରାମ ରେଢ଼ାଖୋଲ ଠାରୁ ୨୨ କି.ମି. ଦୂରରେ ଅବସ୍ଥିତ । ଗ୍ରାମ ନିକଟସ୍ଥ ପାହାଡ ଖୋଲ ନିକଟରେ ଏକ ବିଶାଳକାୟ ପ୍ରସ୍ତର ଖଣ୍ଡ ଅବସ୍ଥିତ । ସେ ସ୍ଥାନଟିକୁ ପୋତି ସମତଳ କରାଯାଇଛି । ଉକ୍ତ ଶିଳା ଉପରେ ଖୋଦିତ ଭାସ୍କର୍ଯ୍ୟଟି ଏକ ଅଦ୍ଭୁତ ଆକାର

ମଣ୍ଡିତା ସ୍ତ୍ରୀ ମୂର୍ତ୍ତି ଏବଂ ତାର ବାମ ପାଖରେ ଆଉ ଛୋଟ ଛୋଟ ମୂର୍ତ୍ତି ଖୋଦିତ ହୋଇଅଛି । ଲୋକମାନେ ଏହି ସ୍ତ୍ରୀ ମୂର୍ତ୍ତିକୁ ସୁହାଣୀ ଦେବୀ ବୋଲି କହନ୍ତି ।

ଏହି ସୁହାଣୀ ମୂର୍ତ୍ତିଙ୍କ ସହ ପାଣ୍ଡବ ପାଞ୍ଚଭାଇଙ୍କର ସ୍ୱର୍ଗାରୋହଣ ସମୟର କାହାଣୀ ଜଡ଼ିତ । ଏହି ସୁହାଣୀଦେବୀ ଜନୈକ ସୌଦାଗର ହରିସାହୁର କନ୍ୟା ଥିଲେ ।

''ଅମରାବତୀରେ  ହରିସାହୁ ବୈଶ୍ୟଜାତି
ସୁହାଣୀ ନାମରେ ତାର ଅଛଇ ଦୁହିତୀ ।''

(ସାରଳା ମହାଭାରତ, ସ୍ୱର୍ଗାରୋହଣପର୍ବ)

ସେ ଉଆଁସି କନ୍ୟା ହୋଇଥିବାରୁ ବିବାହ ହେବା ସମୟରେ ନିଶ୍ଚିତ ମରିବ ବୋଲି ଜଣାପଡ଼ିଥିଲା ।

''ରୋହିଣୀ ନକ୍ଷତ୍ର ଆଉ ଇନ୍ଦ୍ରନାମେ ଯୋଗ
ସେଦିନ କନ୍ୟା ଜନ୍ମ ହୋଇଥିଲା ଭୋଗ ।'' (ସାରଳା ମହାଭାରତ)

ସୁହାଣୀର ଜନ୍ମ ନକ୍ଷତ୍ର ଓ ଅଶୁଦ୍ଧି ଯୋଗ ହେତୁ ବିବାହ କାଳରେ ତାର ମୃତ୍ୟୁ ଅନିବାର୍ଯ୍ୟ । ଜ୍ୟୋତିଷ କହିଲା:-

''ବୋଇଲା ସେ ଜଉତିଷ ଶୁଣ ଆହେ ବୈଶ୍ୟ,
ଏହି କନ୍ୟା ଭାଗ୍ୟବତୀ ତୋତେ ଦେବ ଯଶ ।
ମାତ୍ର କଥାଏ କହିବି କରତୁ ବିଶ୍ୱାସ ।
ବିଭା ହେବା କାଳରେ ମରିବ ଅବଶ୍ୟ ।

(ସା: ମହାଭାରତ - ସ୍ୱା:- ପର୍ବ)

ପାଣ୍ଡବମାନଙ୍କର ସ୍ୱାର୍ଗାରୋହଣ ପଥରେ ହରିସାହୁ ତାର ଝିଅକୁ ଯୁଧିଷ୍ଠିରଙ୍କୁ ସମର୍ପି ଦେଲା । ପାଣ୍ଡବ ଅନ୍ୟ ଭାଇମାନଙ୍କର ଅନୁରୋଧରେ ଯୁଧିଷ୍ଠିର ଶେଷରେ ସେ କନ୍ୟାକୁ ବିବାହକଲେ । ରେଢ଼ାଖୋଲର ବଂଶାଜାଲର ଧର୍ମପୁରରେ ସେହି ପୁଣ୍ୟସ୍ମୃତି ରହିଛି । ଏ ବିବାହ ମହାବଳୀଭୀମ, ଅର୍ଜ୍ଜୁନ ପ୍ରଭୃତି ଚାରି ଭାଇମିଶି ଯୁଧିଷ୍ଠିର ଏବଂ 'ସୁଆଣୀ' ଙ୍କ ମଧ୍ୟରେ ଆୟୋଜନ କରିଥିଲେ । ସାହୁର କନ୍ୟାହେତୁ ସେ ଝିଅଟି ''ସାହୁଆଣି'' ବା 'ସୁହାଣୀ' ବୋଲି କଥିତ । ଯୁଧିଷ୍ଠିର ସ୍ୱର୍ଗାରୋହଣ କରିବାକୁ ଯିବାରୁ ସୁହାଣୀକୁ ଏହି ପର୍ବତରେ ରଖାଯାଇଥିଲା ।

''ଯୁଧିଷ୍ଠିର ଦେବଙ୍କର ଭାରିଜା ସୁହାଣୀ,
ସେହି ପର୍ବତ ଗୋଟିରେ ରଖାଇଲେ ଆଣି,
ବୋଇଲେ ତୁ ଏଥିଥାଇ ଶିବ କର ସେବା,
ବାହୁଡା ବେଳରେ ତୋତେ ବାରାଣାସୀ ନେବା ।

(ସା- ମହାଭାରତ - ସ୍ୱ - ପର୍ବ)

ସେ ସେଠାରେ ଶିଖରରେ ଶିବ ପୂଜାକରି ଯୁଧିଷ୍ଠିରଙ୍କୁ ଅପେକ୍ଷା କରି କରି ଶେଷରେ ପଥର ପାଲଟି ଯାଇଥିଲେ ବୋଲି ଲୋକମାନଙ୍କର ବିଶ୍ୱାସ । ଶେଷରେ ସୁହାଣୀ ଦେବୀ ଅତୀତର ମୂକସାକ୍ଷୀ ରୂପେ ସେହି ଦିନଠାରୁ ପୂଜାପାଇ ଆସୁଛନ୍ତି । ସେଠାରେ ମାଘମାସରେ ଏକମେଳା ହୁଏ । ରେଢ଼ାଖୋଲରେ ସେହିପରି ଶିଳା ଉପରେ ଉତ୍କର୍ଣ୍ଣ ଭାସ୍କର୍ଯ୍ୟ ଅନ୍ୟ କେଉଁଠାରେ ଦେଖିବାକୁ ମିଳେ ନାହିଁ ।



# ଷଷ୍ଠ ପରିଚ୍ଛେଦ

# ରେଢ଼ାଖୋଲର ପ୍ରତ୍ନତତ୍ତ୍ୱ (୨)

ପ୍ରାଚୀନ ଓଡ଼ିଶା ଭାସ୍କର୍ଯ୍ୟ, କଳା, ସ୍ଥାପତ୍ୟର ଚରମ ସୀମାରେ ପହଞ୍ଚିପାରିଥିଲା । ଏହିସବୁ ଭାସ୍କର୍ଯ୍ୟ, କଳା, ସ୍ଥାପତ୍ୟକୁ ଓଡ଼ିଶାର ନଦୀ ଅବବାହିକାମାନଙ୍କର ଦାନ ଅତୁଳନୀୟ । ରେଢ଼ାଖୋଲ ରାଜ୍ୟଟି ଦୁଇଟି ନଦୀ ଅବବାହିକା ମହାନଦୀ ଓ ବ୍ରାହ୍ମଣୀ ମଧ୍ୟରେ ଅବସ୍ଥିତ । ଏହି ଦୁଇ ଅବବାହିକାରୁ ବ୍ରାହ୍ମଣୀ ଅବବାହିକା ଗୁରୁତ୍ୱପୂର୍ଣ୍ଣ ।

ବ୍ରାହ୍ମଣୀ ଅବବାହିକାର ପ୍ରତ୍ନତତ୍ତ୍ୱ:-

ବ୍ରାହ୍ମଣୀ ଅବବାହିକାର ପାର୍ବତ୍ୟ ଅଞ୍ଚଳ ମଧ୍ୟରେ ଗାଙ୍ଗପୁରର ରାଉରକେଲା ବେଦବ୍ୟାସ ଅଞ୍ଚଳ, ସିଂହଭୂମି, ବଣାଇ, ବାମଣ୍ଡା, ପାଲଲହଡା, ତାଳଚେର, ରେଢ଼ାଖୋଲର ନାକଟିଦେଉଳ ଅଞ୍ଚଳ, ପୂର୍ବରେ ଅନୁଗୋଳ, ହିନ୍ଦୋଳ, କେନ୍ଦୁଝର, ତେଲକୋଇ- ସମାକୋଇ ଉପତ୍ୟକା ଓ ଢ଼େଙ୍କାନାଳ । ସେହିପରି ସମତଳ ଅଞ୍ଚଳ ମଧ୍ୟରେ କଟକ ଜିଲ୍ଲାର ସମତଳ ଅଞ୍ଚଳ, ଯାଜପୁର ସବ୍‌ଡିଭିଜନର ଦକ୍ଷିଣାଂଶ ଓ କେନ୍ଦ୍ରାପଡା ସବ୍‌ଡିଭିଜନର ପୂର୍ବାଂଶ ଅବସ୍ଥିତ । 'ବେଦବ୍ୟାସ' ପୁସ୍ତକରେ ଲେଖକ ବେଦବ୍ୟାସର ପ୍ରାକ୍ ଇତିହାସ ପରିଚ୍ଛେଦରେ ଏହି ନଦୀ ଅବବାହିକା ବିଷୟରେ ସମ୍ୟକ୍ ଆଲୋଚନା କରିଛନ୍ତି । ରେଢ଼ାଖୋଲ ସବ୍ ଡିଭିଜନର ନାକଟି ଦେଉଳ ଅଞ୍ଚଳ ବ୍ରାହ୍ମଣୀର ଉପନଦୀ ଟିକିରାନଦୀ ଅବବାହିକାରେ ଅବସ୍ଥିତ । ଏହି ଅବବାହିକା ସନ୍ନିକଟ ତାଳଚେର, ଅନୁଗୋଳ ଓ ଢ଼େଙ୍କାନାଳ ଅଞ୍ଚଳର ପ୍ରତ୍ନତତ୍ତ୍ୱ ବିଷୟରେ ଏଠାରେ କିଛି ଆଲୋଚନା କରିବା ଆବଶ୍ୟକ । କାରଣ ଏହି ଟିକିରା ଉପତ୍ୟକାର ପ୍ରତ୍ନତତ୍ତ୍ୱ ତାର ସନ୍ନିକଟ ବ୍ରାହ୍ମଣୀ ଅବବାହିକାର ପ୍ରତ୍ନତତ୍ତ୍ୱ ଦ୍ୱାରା ପ୍ରଭାବିତ ହୋଇଛି ।

ଖ୍ରୀଷ୍ଟୀୟ ଅଷ୍ଟମ-ନବମ ଶତାବ୍ଦୀରେ ତାଳଚେର ଠାରୁ ୧୨ କି.ମି. କୁଆଁଳଠାରେ କେତେକ ପ୍ରାଚୀନ କୀର୍ତ୍ତି ଦେଖାଯାଏ । ଏହା ସ୍ତମ୍ଭ ବା ଶୁଲ୍‌କୀ ବଂଶର ରାଜଧାନୀ ''କୋଦାଳକ'' । ଏଠାରେ ଅନେକ ଗୁଡ଼ିଏ ମୁଖଶାଳା ବିହୀନ ଓ ତ୍ରିରଥ ପ୍ରଣାଳୀରେ ଗଠିତ ମନ୍ଦିର ଦେଖାଯାଏ । ପ୍ରାଚୀନ କୋଦାଳକ ମଣ୍ଡଳର ଶୁଲ୍‌କି ରାଜା କୁଳସ୍ତମ୍ଭଙ୍କର ତାଳଚେର ତାମ୍ରଶାସନରୁ ଜଣାପଡେ ଯେ ରୂପ୍ୟ ନାମକ ଏକ ପ୍ରକାରର ମୁଦ୍ରା ସେ କାଳରେ ପ୍ରଚଳିତ ଥିଲା । ଦାନ ସମୟରେ ଜଳସହିତ ୪୨ ଗୋଟି ରୂପ୍ୟ ଦକ୍ଷିଣା ସ୍ୱରୂପ ଦିଆଯାଉଥିଲା । ସେମାନଙ୍କର ଇଷ୍ଟଦେବୀ ଥିଲେ ସ୍ତମ୍ଭେଶ୍ୱରୀ । କୁଆଁଳ ନିକଟସ୍ଥ ବାଲିସାହିଠାରେ ଜଙ୍ଗଲ ମଧ୍ୟରେ ଏକ ଚାମୁଣ୍ଡା ମୂର୍ତ୍ତି ଅବହେଳିତଭାବେ ପଡି ରହିଛି । ସେଥିରେ କାକ ଓ ସ୍ତମ୍ଭଚିହ୍ନ ଦେଖାଯାଏ । ଏହି ଦେବୀ ଶୁଲ୍‌କୀ ରାଜବଂଶର ଇଷ୍ଟଦେବୀ ଥିଲେ ।

ତାଳଚେରଠାରୁ ପଚାଶ କିଲୋମିଟର ଦୂର ବଜ୍ରକୋଟଠାରେ ଅନେକ ଗୁଡ଼ିଏ ମନ୍ଦିର ଥିବାର ପ୍ରମାଣ ମିଳେ । ଗ୍ରାମର ଚତୁର୍ଦ୍ଦିଗ ତଥା ଘରର ପିଣ୍ଡାତଳେ ମଧ୍ୟ ଭଗ୍ନ ମନ୍ଦିରର ପଥର ଥିବାର ଜଣାଯାଏ । ଏହା ବ୍ରାହ୍ମଣୀର ଦକ୍ଷିଣ କୂଳରେ ଅବସ୍ଥିତ । ବର୍ତ୍ତମାନ ସେଠାରେ ଗୋଟିଏ ଶିବ ମନ୍ଦିର ଅକ୍ଷୁର୍ଣ୍ଣ ଅବସ୍ଥାରେ ଅଛି । ଏହା ଏକ ପ୍ରାଚୀନ ମନ୍ଦିର । ଏହା ମୁଖଶାଳା ବିହୀନ ମନ୍ଦିର କିନ୍ତୁ ମନ୍ଦିର ସମ୍ମୁଖରେ ଚତୁର୍ଭୁଜାକୃତି ସ୍ତମ୍ଭ ଉପରେ ଗୋଟିଏ ପ୍ରାର୍ଥନା କରିବା ପାଇଁ ଘର ଥିଲା । ଗର୍ଭଗୃହ ସମ୍ମୁଖରେ ଏପରି ପ୍ରାର୍ଥନା ମଣ୍ଡପ ଗୁପ୍ତଯୁଗରେ ପରିଲକ୍ଷିତ ହୁଏ । ମନ୍ଦିରର ଦ୍ୱାର ବନ୍ଧର କାରୁକାର୍ଯ୍ୟ ଅତ୍ୟନ୍ତ ସୁନ୍ଦର । ସମ୍ବଲପୁର ଜିଲ୍ଲା ନୃସିଂହନାଥ ମନ୍ଦିର ଉତ୍ତର ଦ୍ୱାର ବନ୍ଧତଳେ ଦକ୍ଷିଣରେ ଗଙ୍ଗାମକର ଉପରେ, ଏହାର ବାମ ପାଖକୁ ଯମୁନା କୂର୍ମ ଉପରେ ବସିଥିବା ଦେଖାଯାଏ । କିନ୍ତୁ ଏହି ମନ୍ଦିରରେ ଗଙ୍ଗା ଯମୁନା ମୂର୍ତ୍ତି ମନ୍ଦିରର କାନ୍ଥରେ ଖୋଦିତ ହୋଇଅଛି । ଏହିପରି ଗଙ୍ଗା ଯମୁନା ମୂର୍ତ୍ତି ପ୍ରାଚୀନ ମନ୍ଦିରରେ ଥାଏ । ତାଳଚେର ସହର ଶେଷ ଭାଗର ବ୍ରାହ୍ମଣୀ କୂଳରେ ପଣ୍ଡିମେଶ୍ୱର ଶିବ ମନ୍ଦିର ଅବସ୍ଥିତ । ସେଠାରେ ବୌଦ୍ଧ, ବିଷ୍ଣୁ, ଶିବ ଓ ଶକ୍ତି ପ୍ରତିମା ଅଛି ।

ବ୍ରାହ୍ମଣୀ ନଦୀ ଗର୍ଭରେ ତାଳଚେର ଗଡର ବିପରୀତ ସାରଙ୍ଗ ନିକଟସ୍ଥ ନଦୀଗର୍ଭରୁ ଉତ୍ଥିତ ଶିଳାଖଣ୍ଡରେ ୩୨ ଫୁଟ ଲମ୍ବର ଅନନ୍ତଶାୟୀ ବିଷ୍ଣୁମୂର୍ତ୍ତି ଖୋଦିତ ହୋଇଛି । ମୂର୍ତ୍ତିଟି ଚତୁର୍ଭୁଜ, ଆଜାନୁଲମ୍ବିତ ବନମାଳା ନାଭିରୁ ବହିର୍ଗତ ପଦ୍ମଫୁଲ ଉପରେ ଚତୁର୍ମୁଖ ବ୍ରହ୍ମା ଉପବିଷ୍ଟ, କୌସ୍ତୁଭମଣି ଧାରଣ ଓ ହୃଦୟରେ ଶ୍ରୀବତ୍ସର ପଦଚହ୍ନ । ତାଳଚେର ଠାରୁ ୩୦ କି.ମି. ଦୂରରେ ବ୍ରାହ୍ମଣୀ ନଦୀର ଦକ୍ଷିଣ କୂଳରେ ପ୍ରାୟ ୨ କି.ମି. ଭୀମକାଣ୍ଡ ନାମକ ସ୍ଥାନରେ ଚାଷଜମି ନିକଟରେ ଏକ ପ୍ରକାଣ୍ଡ ଶିଳାଖଣ୍ଡ ଉପରେ ଅନନ୍ତଶାୟୀ ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି ଖୋଦିତ ହୋଇଛି । ଏହା ଲମ୍ବାରେ ୪୧ ଫୁଟ ୬ ଇଞ୍ଚ ।

ରେଢ଼ାଖୋଲ ରାଜ୍ୟ ବ୍ରାହ୍ମଣୀ ଅବବାହିକାରେ ଥିବା ଏକ ରାଜ୍ୟ । ବ୍ରାହ୍ମଣୀ ନଦୀ ଏହି ରାଜ୍ୟରେ ପ୍ରବାହିତ ହୋଇନାହିଁ କିନ୍ତୁ ଏହାର ଉପନଦୀ - ତିକିରା ନଦୀ ଏହି ରାଜ୍ୟର କିସିଣ୍ଡା ଅଞ୍ଚଳରୁ ବାହାରି ନାକଟିଦେଉଳ ଅଞ୍ଚଳ ମଧ୍ୟରେ ପ୍ରବାହିତ ହୋଇ ବ୍ରାହ୍ମଣୀ ନଦୀରେ ମିଶିଛି । ତେଣୁ ଏହି ରାଜ୍ୟର ପ୍ରତ୍ନତତ୍ତ୍ୱ ବିଶେଷତଃ ତିକିରା ନଦୀ ଅବବାହିକାର ପ୍ରତ୍ନତତ୍ତ୍ୱ ଏବଂ ଏହା ବ୍ରାହ୍ମଣୀ ଅବବାହିକାର ପ୍ରତ୍ନତତ୍ତ୍ୱ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ।

ତିକିରା ନଦୀ ଅବବାହିକାର ପ୍ରତ୍ନତତ୍ତ୍ୱ ବିଷୟରେ ଆଲୋଚନା କଲେ ପ୍ରଥମେ ଝାଡେଶ୍ୱର ଶିବ ମନ୍ଦିର ଦୃଷ୍ଟିଗୋଚର ହୁଏ । ଦ୍ୱିତୀୟରେ ବିଂଝେଶ୍ୱର ଶିବ ମନ୍ଦିର ଓ ତୃତୀୟରେ ଝୁନ୍ଝୁରୁଗଡ ଓ ସେହିଗଡ ମଧ୍ୟରେ ଥିବା ପ୍ରାଚୀନ ମନ୍ଦିର ସମୂହ । ପ୍ରଥମ ମନ୍ଦିରଟି ତିକିରାର ବାମ ତୀରରେ ଓ ଅନ୍ୟ ଦୁଇଟି ଦକ୍ଷିଣ ତୀରରେ ଅବସ୍ଥିତ । ଏହି

ବାମତୀରର ଝାଡେଶ୍ୱର ଶିବ ମନ୍ଦିରଟି ବହୁ ପ୍ରାଚୀନ ମନ୍ଦିର । ସମ୍ଭବତଃ ଏହା ବ୍ରାହ୍ମଣୀ ଅବବାହିକାର କୁଆଜ ଠାରେ ଥିବା ମନ୍ଦିରର ସମକକ୍ଷ ।

ଝାଡେଶ୍ୱର ଶିବ ମନ୍ଦିରଃ-

ବ୍ରାହ୍ମଣୀର ଉପନଦୀ ଟିକିରାର ଦକ୍ଷିଣ କୂଳରେ ବିଞ୍ଚେଶ୍ୱର ଶିବଙ୍କ ମନ୍ଦିର ବିଷୟ ଆଲୋଚିତ ହୋଇସାରିଛି । ନାକଟି ଦେଉଳଠାରୁ ଟିକିରା ନଦୀର ବାମକୂଳରେ କିସିଣ୍ଡା ରାସ୍ତାରେ ଆଠ କିଲୋମିଟର ଯାଇ ଦକ୍ଷିଣ ଆଡକୁ ୩ କିଲୋମିଟର ଗଲେ ପାହାଡ ପାଦ ଦେଶରେ ପଣ୍ଡୁଆ (ଯୋରାପାଲି) ସ୍ଥାନରେ ପହଞ୍ଚିହୁଏ । ସେହି ସ୍ଥାନଠାରେ ଏକ ମନ୍ଦିରର ଧ୍ୱଂସାବଶେଷ ଦୃଷ୍ଟିଗୋଚର ହୁଏ । ଏହି ମନ୍ଦିରର ଚହ୍ଲବର୍ଷ ଲୋକଲୋଚନର ଅଗୋଚରରେ ଥିଲା । ଭଗ୍ନ ମନ୍ଦିରଟି ଏକ କୁଦ ସଦୃଶ ଥିଲା । ସେହି ସ୍ଥାନ ବାଉଁଶବୁଦା ଓ ଅନ୍ୟାନ୍ୟ କଣ୍ଟା ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଦଶ ପନ୍ଦର ବର୍ଷ ପୂର୍ବେ ସ୍ଥାନୀୟ ଏକ ଯୁବକ ଗାଈ ଓ ଛେଳି ଚରାଉଥିବା ସମୟରେ ମନ୍ଦିରର ଭଗ୍ନଅଂଶ ଦେଖିବାକୁ ପାଇଲା । ଗ୍ରାମ ଲୋକମାନେ ସେହି ସ୍ଥାନଟିକୁ ପରିଷ୍କାର କରି ମନ୍ଦିରର ଭଗ୍ନାବଶେଷ ଉଦ୍ଧାର କଲେ । ସେଠାରେ ସେହି ଭଗ୍ନପଥର ସାହାଯ୍ୟରେ ଏକ ଛୋଟ ମନ୍ଦିର ନିର୍ମାଣ କଲେ । ଜୋରାପାଲିର ଧୋବାସାହୁର ମାନସିକ ଅନୁସାରେ ପୁତ୍ର ହେବାରୁ ସେ ଉତ୍ସାହିତ ହୋଇ ନୂତନ ମନ୍ଦିର ନିର୍ମାଣ କଲେ । ସେହି ମନ୍ଦିରର ଶିଖର, ଅଁଳାବେଢ଼ା, ଖଣ୍ଡ ଖଣ୍ଡ ହୋଇ ସ୍ତୂପଆକାରରେ ସେଠାରେ ପଡ଼ି ରହିଛି । ଶିଖର ଖଣ୍ଡମାନ ଦେଖିଲେ ଜଣାଯାଏ, ସେହି ପୂର୍ବତନ ମନ୍ଦିରଟି ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଶିଖର ପରି ଆକାରରେ ବଡ । ସେଠାରେ ପୁରାତନ ମନ୍ଦିରର ନବଗ୍ରହ ଶିଳା ମୂର୍ତ୍ତି ନୂତନ ମନ୍ଦିର ସମ୍ମୁଖରେ ରଖି ପୂଜା ପାଉଛନ୍ତି । ଅନେକଗୁଡ଼ିଏ ଚୌଖୁଣ୍ଟ କଟାପଥର ଇତସ୍ତତଃ ଭାବେ ପଡ଼ିଛି । ପୁରୁଣା ମନ୍ଦିର ଉପରେ ସେହି ଭଗ୍ନ ପ୍ରସ୍ତରରେ ନୂତନ ମନ୍ଦିର ନିର୍ମିତ ହେବାରୁ ପ୍ରାଚୀନ ମନ୍ଦିର ଭିତ୍ତି ପ୍ରସ୍ତରର ଆକାର କଳ୍ପନା କରିବା ସମ୍ଭବ ନୁହେଁ । ଏହି ମନ୍ଦିରଟି ଝାଡେଶ୍ୱର ଶିବ ମନ୍ଦିର ନାମରେ ନାମିତ ।

ଏହି ସ୍ଥାନଟି ·ଟିକିରାନଦୀ, ତାର ଉପନଦୀ ଶଙ୍ଖ ଓ ଚମ୍ପାଜୀର ସଙ୍ଗମ ସ୍ଥଳ ନିକଟସ୍ଥ ହୋଇଥିବାରୁ ଏହା କୌଣସି ସାମନ୍ତରାଜଙ୍କର ରାଜଧାନୀ ହୋଇଥିବା ସମ୍ଭବ ।

ରାଜକବି ଗଙ୍ଗାଧର ମିଶ୍ର ''କୋଶଳାନନ୍ଦ'' କାବ୍ୟରେ ରଣସିଂହଙ୍କ ରାଜତ୍ୱ ବିଷୟ ଉଲ୍ଲେଖ କରିଛନ୍ତି ।

ନିଶମ୍ୟ ରାଜ୍ୟଂ ରଣସିଂହତୋଗତଂ
ଯଥାସ୍ଥିତଂ ବୀରବରାତି ଭୂଷିତଂ
କ୍ରମାଦଣୀକୃତ୍ୟ କୃପାଣ ଧାରୟା ବିପକ୍ଷଲକ୍ଷ୍ମୀଂ ନୟବାର୍ଯ୍ୟ କାନ୍ତୟା'' (୧୬)
(କୋଶଳାନନ୍ଦ - ଦଶମ ସର୍ଗ)

(କଳିଯୁଗାବ୍ଦ ୪୨୦୦ରେ ରଣସିଂହ କୋଶଳର ଏକ ପ୍ରାଚୀନ ରାଜାଥିବାର କୋଶଳାନନ୍ଦର ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ସେ କୋଶଳମଣ୍ଡଳମାନଙ୍କରେ ରାଜା ନିଯୁକ୍ତ କରିଥିବା ଏହି ଶ୍ଳୋକରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଅନ୍ୟ କୌଣସି ଐତିହାସିକ ଉପାଦାନରୁ ଏହି ରଣସିଂହଙ୍କ ଅସ୍ତିତ୍ୱ ସମର୍ଥିତ ହେଉନାହିଁ । ଗବେଷକମାନେ ଗବେଷଣା କଲେ ଉକ୍ତ ସ୍ଥାନଟି ତାର ରାଜଧାନୀ କି ନୁହେଁ ଜଣାପଡ଼ିପାରେ ।)

ଝାଡେଶ୍ୱର ଶିବ ମନ୍ଦିର ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ଅର୍ଜ୍ଜୁନ ଦେବଙ୍କ ସମୟରେ ନିର୍ମିତ ହୋଇଥିବା ସମ୍ଭବ, କାରଣ ଅର୍ଜ୍ଜୁନ ଦେବଙ୍କ ରାଜଧାନୀ ସେଠାରେ ଥିଲା । ବାମଣ୍ଡା ରାଜା ମୁଖୀଦେବ ସମ୍ମୁଖ ଯୁଦ୍ଧରେ ରେଢ଼ାଖୋଲ ରାଜା ପ୍ରବଳ ପ୍ରତାପୀ ଅର୍ଜ୍ଜୁନ ଦେବଙ୍କୁ ପରାସ୍ତ କରିବା ସମ୍ଭବ ନ ହେବାରୁ ଦିନେ ମଧ ରାତ୍ରିରେ ତାଙ୍କର ରାଜଧାନୀ ଆକ୍ରମଣ କରିଥିଲେ । ମୁଖୀଦେବ କେତେକ ଗଣ୍ଡ ଓ କନ୍ଧ ସରଦାରମାନଙ୍କ ସାହାଯ୍ୟରେ ତାଙ୍କର ସମସ୍ତ ବିଶ୍ୱସ୍ତ ଅଙ୍ଗରକ୍ଷୀଙ୍କ ସମେତ ସମସ୍ତଙ୍କୁ ମାରିଦେଇଥିଲେ । ଝାଡେଶ୍ୱର ଶିବ ମନ୍ଦିରକୁ ଭାଙ୍ଗି ସେହି ମନ୍ଦିରରେ ଥିବା ବୃଷଭ ମୂର୍ତ୍ତିକୁ ଉଠାଇ ବାମଣ୍ଡା ନେବା ବାଟରେ ସରାପାଲିଠାରେ ମୂର୍ତ୍ତିଟି ଭାରି ହେବାରୁ ସେଠାରେ ଛାଡି ପଳାଇଲେ । ଏହି ବୃଷଭ ମୂର୍ତ୍ତି ବର୍ତ୍ତମାନ ସରାପାଲିର ସିଦ୍ଧେଶ୍ୱର ଗୁଡ଼ିଘରେ ପୂଜା ପାଉଛନ୍ତି ।

ଝୁନୁରୁଗଡ଼:-

ଟିକିରା ନଦୀର ଦକ୍ଷିଣ କୂଳରେ କୁଆଁମରାର ବିଘ୍ନେଶ୍ୱର ଶିବ ମନ୍ଦିରରୁ ପ୍ରାୟ ଦୁଇ କିଲୋମିଟର ତଳକୁ ଗଲେ ଝୁନୁରୁ ଗଡର ଭଗ୍ନାବଶେଷ ଦୃଷ୍ଟିଗୋଚର ହୁଏ । ସେହି ଗଡର ପଞ୍ଚଖଣ୍ଡୀଙ୍କ ମନ୍ଦିର ଓ ଜଗନ୍ନାଥଙ୍କ ମନ୍ଦିରର ଭଗ୍ନାବଶେଷ ରହିଛି । ମାହେଶ୍ୱରୀଙ୍କ ପ୍ରାଚୀନ ମନ୍ଦିର ସେଠାରେ ନାହିଁ । କିନ୍ତୁ ବର୍ତ୍ତମାନ ଦେବୀ ମାହେଶ୍ୱରୀ ଏକ ଗୁଡ଼ିଘରେ ପୂଜା ପାଉଛନ୍ତି ।

ଦେବୀ ମାହେଶ୍ୱରୀ ଚତୁର୍ଭୁଜା । ଦକ୍ଷିଣ ପାଦ ଏକ ଶବ ଉପରେ ସ୍ଥାପିତ ହୋଇରହିଛି । ବାମ ପାଦ ସିଂହଉପରେ ରହିଛି । ଦକ୍ଷିଣ ଭାଗର ଉପର ହସ୍ତରେ ପାନପାତ୍ର ଓ ନିମ୍ନ ହସ୍ତରେ କଟାମୁଣ୍ଡ ଧାରଣ କରିଛନ୍ତି । ବାମ ଭାଗର ଉପର ହସ୍ତରେ ଖଡ଼୍ଗ ଓ ନିମ୍ନରେ ମସାଲ ଶୋଭିତ । ଦେବୀଙ୍କର ଗଳାରେ ଅଣଚାଶ ଗୋଟି ମୁଣ୍ଡବିଶିଷ୍ଟମାଳା ଆଜାନୁ ଲମ୍ବିତ । ସେହିପରି ଅନ୍ୟ ଏକ ଛୋଟ ଦେବୀ ମାହେଶ୍ୱରୀଙ୍କ ଡାହାଣପାର୍ଶ୍ୱରେ ରଖାହୋଇ ପୂଜା ପାଉଛନ୍ତି । ଲୋକେ ସେହି ଛୋଟ ମୂର୍ତ୍ତିକୁ ସୂର୍ଯ୍ୟ ମାହେଶ୍ୱରୀ ବୋଲି କହୁଛନ୍ତି । ମୂର୍ତ୍ତିଙ୍କର ପଛପଟରେ ଏକ ଉଚ୍ଚସ୍ତମ୍ଭ ପରି ପଥରଟି ରହି ପୂଜା ପାଉଛନ୍ତି । ସେହି ପଥରଟି ସ୍ତମ୍ଭେଶ୍ୱରୀ ହୋଇପାରନ୍ତି । ଦେବୀ ମାହେଶ୍ୱରୀଙ୍କୁ କେହି କେହି ରଣଘଣ୍ଟା ମାହେଶ୍ୱରୀ ବୋଲି କହିଥାନ୍ତି ।

ଝୁରୁଗଡର ପୁଙ୍ଖାନୁପୁଙ୍ଖ ବିବରଣୀ ରେଢ଼ାଖୋଲ ରାଜ ପରିବାର ପରିଚ୍ଛେଦରେ ପ୍ରଦତ୍ତ ହୋଇଥିବାରୁ ଏହାର ବିଶେଷ ଆଲୋଚନା ଏଠାରେ ଆବଶ୍ୟକ ନାହିଁ । ଦେବୀ ମାହେଶ୍ୱରୀଙ୍କ ମନ୍ଦିର ବିଷୟରେ ପରେ ରେଢ଼ାଖୋଲ ରାଜ୍ୟର ଧର୍ମାନୁଷ୍ଠାନ ପରିଚ୍ଛେଦରେ ବିଶେଷ ଆଲୋଚନା ହେବ ।

ଝୁରୁଗଡର ଶିଳାଲେଖଃ-

ଝୁରୁଗଡର ଅନ୍ୟ ଏକ ବିଶେଷତ୍ୱ ହେଲା ସେଠାରେ ଥିବା ଏକ ଶିଳାଲେଖ । ଟିକିରାନଦୀର ଦକ୍ଷିଣ କୂଳରେ ଏକ ଗଛମୂଳେ ବଡ କିଲୋମିଟର ଖୁଣ୍ଟି ପରି ପ୍ରସ୍ତରଖଣ୍ଡ ରହିଛି । ସେହି ପ୍ରସ୍ତରଖଣ୍ଡରେ ଶିଳାଲେଖଟି ଖୋଦିତ ହୋଇଛି । ଶିଳାଟି ଭୂମି ଉପରକୁ ୧.୩୫ମିଟର ଉଚ୍ଚ X ୦.୫୦ ମିଟର ପ୍ରସ୍ଥ X ୦.୨୫ ମିଟର ଘନର ଦିଶୁଛି । ଅକ୍ଷର ଗୁଡ଼ିକ ଭଲ ଓଡ଼ିଆ ଅକ୍ଷରରେ ୧୪ଟି ଧାଡ଼ିରେ ଲିଖିତ ।

ଶିଳାଲେଖରେ ବସିଙ୍ଗିଖୁଳ ରାଜା (ରେଢ଼ାଖୋଲ) ଶ୍ରୀ ବିଷ୍ଣୁଚନ୍ଦ୍ର ଜେନାମଣି ୧୧ ଅଙ୍କ (ଖ୍ରୀ ୧୮୩୮)ରେ ବୁଟୁକୀ ସୁଦ ଜାତିର ଶ୍ରୀ ଯୋଗୀନ୍ଦ୍ର ଗଡତିଆଙ୍କୁ ଆମ୍ବ, ପଣସ, ତାଳ, ଖଜୁରୀ ଚାରି ଯୁଗରେ ତାଙ୍କ ଅଧିକାରରେ ରହିବା ପାଇଁ ପଟ୍ଟା ଦିଆଯାଇଛି । ସମ୍ଭବତଃ ଯୋଗୀନ୍ଦ୍ରଙ୍କ ପିତା କଂସ, ତାଙ୍କର ପିତା ବାଳା, ତାଙ୍କରପିତା ବିସ୍ନୁ ଗଡତିଆ ରାଜପରିବାରର ବିଶ୍ୱସ୍ତ ହୋଇ ରହିଆସିଛନ୍ତି ।

ଶିଳାଲେଖାଟିରେ ଲିଖିତ ଉଦ୍ଧୃତାଂଶଃ-

''୧୧ଙ୍କ ରାମାଦ୍ର ବସିଙ୍ଗି ଖୁଳ ରାଜା
ବିଷ୍ଣୁ ଚନ୍ଦ୍ର ବିସ୍ନୁଗଡତିଆଙ୍କ ପୁଅ ବାଳା ଗଡୟଙ୍କ ପୁଅ
କଂସଗଡୟାଙ୍କ ପୁଅ ଜୁଗିନ୍ଦ୍ର ଗଡତିଆ ଆମ୍ବ, ପଣସ,
ତାଳ, ଖଜୁରୀ ୪ କାଳ ଯୁଗରେ ଜାତି, ବୁଟୁକୀ ସୁଦ ।'' (ଚିତ୍ର)

ଏଥିରୁ ଅନୁମିତ ହୁଏ ଉନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ରେଢ଼ାଖୋଲକୁ ବସିଙ୍ଗିଖୁଜ କୁହାଯାଉଥିଲା କିମ୍ବା କୁଣ୍ଡାମରା ଜମିଦାରୀ ଅଞ୍ଚଳକୁ ବସିଙ୍ଗିଖୁଳ ବୋଲି କୁହାଯାଉଥିଲା । ରାଜା ବିଷ୍ଣୁଚନ୍ଦ୍ରଙ୍କର ଯୋଗୀନ୍ଦ୍ର ଗଡତିଆ ଅତିପ୍ରିୟ ଥିଲେ । ସୁଦମାନେ ଝୁରୁ ଜେନାମଣିଙ୍କୁ ରକ୍ଷା କରିଥିବାରୁ ସେହି ସୁଦର ବଂଶଧରଙ୍କୁ ସମସ୍ତ ସୁବିଧା ସୁଯୋଗ ଦିଆହୋଇ ଆସିଛି । ସେ ସମୟରେ ଯୋଗୀନ୍ଦ୍ର ଗଡତିଆଙ୍କୁ କୁଣ୍ଡାମରା ଜମିଦାରୀର ଭାର ଦିଆଯାଇଥିଲା ।



# ସପ୍ତମ ପରିଚ୍ଛେଦ

# ରେଢ଼ାଖୋଲର ଲୋକନୃତ୍ୟ

ଲୋକନୃତ୍ୟ, ଲୋକ ସାହିତ୍ୟ ଓ ଲୋକଗୀତ ମାନବ ସମାଜ ପ୍ରତି ଏକ ଉତ୍କୃଷ୍ଟ ଐଶ୍ୱରିକ ଉପହାର । ଏହା ମାନବ ସୃଷ୍ଟି କାଳରୁ କର୍ମକ୍ଲାନ୍ତ ଅବସାଦଭରା ଜୀବନରେ ନୂତନତ୍ୱ ସୃଷ୍ଟିକରି ତାର ଚିତ୍ତ ଉତ୍‌ଫୁଲ୍ଲ କରିଆସିଛି । ଏହି ଲୋକନୃତ୍ୟ ଜଣକର ନୁହେଁ, ଗଣର । ଗଣ ଜୀବନର ମାର୍ମିକ ଆଲେଖ୍ୟ ପ୍ରତିଫଳିତ ହୋଇଥାଏ ଏହି ଲୋକନୃତ୍ୟରେ । ସଙ୍ଗୀତ ଶାସ୍ତ୍ର ଅନୁଯାୟୀ ସଙ୍ଗୀତ ହେଲା - ''ଗୀତଂ ବାଦ୍ୟଂ ଚ ନୃତ୍ୟଂଚ ତ୍ରୟଂ ସଙ୍ଗୀତମୂଚ୍ୟତେ ।'' ଅର୍ଥାତ୍ - ଗୀତ, ବାଦ୍ୟ ଓ ନୃତ୍ୟର ଏକତ୍ର ସମାବେଶକୁ ହିଁ ସଙ୍ଗୀତ କୁହାଯାଏ । ପ୍ରକୃତରେ ଲୋକନୃତ୍ୟରେ ଗୀତ, ବାଦ୍ୟ ଓ ନୃତ୍ୟର ହିଁ ସମାବେଶ ହୋଇଥାଏ । ଓଡ଼ିଶାର ଏହି ଲୋକନୃତ୍ୟ ଏକ ବଳିଷ୍ଠ ସାଂସ୍କୃତିକ ପରମ୍ପରା ସୃଷ୍ଟିକରି ଆସିଛି । ଲୋକନୃତ୍ୟ ମଧ୍ୟରେ ଦଣ୍ଡନାଚ, କରମା, ଡାଲଖାଇ, ଶବର ଶବରୁଣୀ ନାଚ, ପାଲା, ଦାଶକାଠିଆ, ଛଉ ନୃତ୍ୟ, ରଣପାନୃତ୍ୟ, ହରିକଥା, କୃଷ୍ଣଗୁରୁ, ଚଇତି ଘୋଡାନାଚ, ଷଣ୍ଢଲଢ଼େଇ, ଷଣ୍ଢ ବାଘ ଲଢ଼େଇ ନାଚ, ଘୁମୁରା, ପାଇକନାଚ, ରାମଲୀଳା, କୃଷ୍ଣଲୀଳା, ଭାରତ ଲୀଳା, ସଂକୀର୍ତ୍ତନ ମଣ୍ଡଳୀ ପ୍ରଭୃତି ପ୍ରଧାନ । ରେଢ଼ାଖୋଲରେ ଲୋକନୃତ୍ୟ ମଧ୍ୟରେ ଦଣ୍ଡନାଚ, କରମା, ପାଲା, ସଂକୀର୍ତ୍ତନ ପ୍ରଭୃତି ଉଲ୍ଲେଖନୀୟ ।

ଦଣ୍ଡ ନାଚ:-

ମହାବିଷୁବ ସଂକ୍ରାନ୍ତି ଦିନ ଦଣ୍ଡନାଚର ଉଦ୍‌ଯାପନୀ ଉତ୍ସବ 'ମେରୁ' ପାଳିତ ହୋଇଥାଏ । ଓଡ଼ିଶାର ବିଭିନ୍ନ ପର୍ବପର୍ବାଣିମାନଙ୍କ ପରି ଚୈତ୍ର ଓ ବୈଶାଖ ମାସରେ 'ଦଣ୍ଡଯାତ୍ରା' ଅନୁଷ୍ଠିତ ହୋଇଥାଏ । ଏହି ଯାତ୍ରାର ମୁଖ୍ୟ ଦେବତା ହେଲେ ଶିବ ଓ କାଳିକା । ଦଣ୍ଡଯାତ୍ରାରେ ଯେଉଁ ଦଣ୍ଡନାଚର ନାଟକ ହୁଏ, ସେଥିରେ ପଞ୍ଚ ଦେବତାଙ୍କ ପୂଜା, ଆରାଧନା ଓ ବନ୍ଦନା ନାଟକର ପ୍ରାରମ୍ଭରୁ କରାଯାଇଥାଏ । ନାଟକର ବିଭିନ୍ନ ପାତ୍ର ପାତ୍ରୀ ହେଲେ- ହରପାର୍ବତୀ, ବାଣାକାରିଆ, ଭାଇଧନ, ପତ୍ର ସଉରା-ପତ୍ର ସଉରାଣୀ, ଚଢ଼େୟା-ଚଢ଼େୟାଣୀ, ବୁଡଲ, ଚନ୍ଦ୍ରସେଣା ଓ ରାଧାକୃଷ୍ଣ ଇତ୍ୟାଦି ।

ଓଡ଼ିଶାରେ ତନ୍ତ୍ରଯୁଗରୁ ଏହି ଯାତ୍ରାର ଆରମ୍ଭ ହୋଇଥିବା ଅନୁମିତ ହୁଏ । 'ଦଣ୍ଡନାଚ' ନାମକ ପୁସ୍ତକରେ ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ସାହୁ ଏହାର ଉତ୍ପତ୍ତି ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ ବୋଲି ନିର୍ଣ୍ଣୟ କରିଛନ୍ତି । ଏହି 'ଦଣ୍ଡନାଚ' ନଟରାଜ ଶିବଙ୍କ ତାଣ୍ଡବ ନୃତ୍ୟର ପର୍ଯ୍ୟାୟଭୁକ୍ତ ବୋଲି ଅନେକ ଗବେଷକ ବିଶ୍ୱାସ କରନ୍ତି । ଦଣ୍ଡନାଚର ପ୍ରାରମ୍ଭରେ ଢୋଲ ଖାଡ଼ି ବାଦ୍ୟର ତାଳେ ତାଳେ ପ୍ରଭା ନୃତ୍ୟ ହୋଇଥାଏ । ଏହି ସମୟରେ କୌଣସି

ଗୀତ ଗାଇବା ଦେଖାଯାଏ ନାହିଁ । କେବଳ ଢ଼ୋଲ ଓ ବଂଶୀ ବାଜୁଥାଏ । ତେଣୁ ଏହା ନଟରାଜ ଶିବଙ୍କ ତାଣ୍ଡବ ନୃତ୍ୟର ଏକ ବହୁମୁଖୀ ଓ ବର୍ଣ୍ଣାଢ଼୍ୟ ପରିପ୍ରକାଶ ବୋଲି ଗବେଷକ ସୁରେନ୍ଦ୍ର ନାଥ ପ୍ରଧାନ ଓ ଲେଖକ ଭାଗୀରଥି ନେପାକଙ୍କ ମତ । କେତେକ ଗବେଷକ ମତ ଦିଅନ୍ତି ଏହା ଏକ ଯୁଦ୍ଧ କାଳୀନ ଯାତ୍ରାର ପରିଚାୟକ । ଏହା ଢ଼ୋଲ, ମହୁରୀବାଦନ, ପତାକା, ଛତ୍ର ଓ ମୟୂରପୁଚ୍ଛ ଧାରଣ ଏବଂ ଭିନ୍ନ ଭିନ୍ନ ଶିବିରରେ ଅବସ୍ଥାନ ପ୍ରଭୃତି ଏକ ଯୁଦ୍ଧକାଳୀନ ଆଗୁଆ ଶିବିର ବା ସେନାଛାଉଣୀରୁ ଯୁଦ୍ଧ କାଳୀନ ଯାତ୍ରାପରି ଲାଗେ ।

ଏହି ଦଣ୍ଡଯାତ୍ରା ପ୍ରାଚୀନ କାଳରୁ ଏକ ଜୈନ ପର୍ବ ଥିବାର ଜଣାଯାଏ । ଜୈନ ମୁନିମାନେ ଯେପରି ନିଷ୍ଠା, କାଷ୍ଠା ଓ ଶରୀରକୁ କଷ୍ଟଦେଇ ବ୍ରତାନୁଷ୍ଠାନ ପାଳନ କରନ୍ତି, ସେହିପରି ଏହି ଦଣ୍ଡରେ ମଧ କୃଚ୍ଛ ସାଧନାର ରୀତି ଦେଖାଯାଏ । ମେରୁଦିନ ଜଳନ୍ତା ନିଆଁରେ ଚାଲିବା, ରତନିଆଁରେ ଦଣ୍ଡ ଭାଙ୍ଗିବା ଦେଖାଯାଏ । ଜୈନମାନଙ୍କର ତୀର୍ଥଙ୍କର ପ୍ରତୀକ ଘଟ ସ୍ଥାପନ ପ୍ରଥାରୁ ଦଣ୍ଡ ଯାତ୍ରାର ଘଟକଳସ ସ୍ଥାପନ ପ୍ରଥା ଆସିଛି । ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ପ୍ରକାରରେ ମହାବିଷୁବ ସଂକ୍ରାନ୍ତି ଚୈତ୍ର ଓ ବୈଶାଖ ମାସରେ ପାଳନ କରିଥାନ୍ତି । ଅନ୍ୟାନ୍ୟ ସ୍ଥାନରେ ଏହାକୁ 'ପାଟୁଆ ଯାତ୍ରା' ବା 'ଘଣ୍ଟପାଟୁଆ ଯାତ୍ରା' କୁହାଯାଏ । ଏହା ଏକ ଶୈବ ପର୍ବ ରୂପେ ପାଳିତ ହୋଇଆସୁଅଛି । ବାଲେଶ୍ୱରରେ ଉଡାପାଟୁଆ, କଟକ ଓ ପୁରୀ ପ୍ରଭୃତି ଉପକୂଳବର୍ତ୍ତୀ ଅଞ୍ଚଳରେ 'ଝାମୁଯାତ୍ରା, ନିଆନ ପାଟୁଆ, ଚଡକ ପୂଜା ପ୍ରଭୃତି ଦଣ୍ଡନାଚର ବିଭିନ୍ନ ରୂପ ।

ଦଣ୍ଡଯାତ୍ରା ସାଧାରଣତଃ ଗଞ୍ଜାମ, ଫୁଲବାଣୀ, ବୌଦ, ସୋନପୁର, ରେଢ଼ାଖୋଲ ଓ ଆଠମଲ୍ଲିକ ଅଞ୍ଚଳରେ ବିଶେଷ ଭାବରେ ଏବଂ ଅନ୍ୟାନ୍ୟ ଗଡଜାତ ଅଞ୍ଚଳରେ ପାଳିତ ହୋଇଥାଏ । ଓଡ଼ିଶାର ମୁଖ୍ୟଦଣ୍ଡକାଳୀପୀଠଗୁଡ଼ିକ ମଧରେ ଗଞ୍ଜାମର କୁଲାଡ, ପୁରୁଣା କଟକର ଭୈରବୀ, ବଉଧାର ଭଟାରିକା, ଢ଼େଙ୍କାନାଳର ହିଙ୍ଗୁଳା, ରେଢ଼ାଖୋଲ - ବରୁଡାର ମାହେଶ୍ୱରୀ ପ୍ରଧାନ । ରେଢ଼ାଖୋଲର ମୁଖ୍ୟ ଦଣ୍ଡ ଭୈରବ ପୀଠ ମଧରେ (ରାମପୁର, ନୂଆସାହି, ସାଲେସିଙ୍ଗ୍, ବେତଗଡ) କଦଳୀ ଗଡ ଶିବ ମନ୍ଦିରରୁ ଦୁଇଖାଦୁ (କଦଳୀ ଗଡ ଓ କନ୍ଧରା) ତ୍ରିବଣପୁର ମନ୍ଦିରର ଦୁଇଖାଦୁ (ତ୍ରିବଣପୁର, ଖଜୁରୀ ଝରଣ) ଏବଂ ଖୁବେଳ ମନ୍ଦିରରୁ ୭ଖାଦୁ (୭ଟି ଦଳ) ଦଣ୍ଡ ଉଠାଇ ଥାଆନ୍ତି । ସେହିପରି ନାକଟି ଦେଉଳ ଅଞ୍ଚଳରେ ତଇଁତାର ରାମେଶ୍ୱର ଶିବ ମନ୍ଦିରରୁ ଦୁଇଖାଦୁ, ଖୋଲଗଡ ଓ ନୀଳକଣ୍ଠେଶ୍ୱର ଶିବ ମନ୍ଦିରରୁ ଦୁଇଖାଦୁ (ତଣ୍ଡାବିରା, ଖୋଲଗଡ), ନାକଟି ଦେଉଳ କନକେଶ୍ୱର ଶିବଙ୍କଠାରୁ ଏକ ଖାଦୁ (ପେଣ୍ଡୁବାହାଲ), ସରାପାଲିର ସିଦ୍ଧେଶ୍ୱର ଶିବଙ୍କ ଠାରୁ ଏକ ଖାଦୁ ଓ ଉପର ମୁଣ୍ଡାର ଝାଡେଶ୍ୱର ଶିବ ମନ୍ଦିରରୁ ଏକଖାଦୁ, ବଳମ ଶିବ ମନ୍ଦିରରୁ ଏକ ଖାଦୁ ଏବଂ କୁଞ୍ଜାମୁରାର ଶିବ ମନ୍ଦିରରୁ ଏକ ଖାଦୁ ଦଣ୍ଡ ଉଠାଇଥାନ୍ତି ।

ଦଣ୍ଡଯାତ୍ରାର ଉତ୍ପତ୍ତି ସମ୍ପର୍କରେ ବହୁ କିମ୍ବଦନ୍ତୀ ମଧ୍ୟରୁ ଗୋଟିଏ ହେଲା- ସିରିଆ ମହାଦେବୀଙ୍କର ତେରଗୋଟି ପୁତ୍ର ଥିଲେ । ଦିନେ ଚୈତ୍ରମାସ ଖରାରେ ସେମାନେ ଉତ୍ତପ୍ତ ବାଲୁକାରେ ଖେଳୁଥିଲେ । ସେହି ବାଟ ଦେଇ ଶିବ ପାର୍ବତୀ ବୃଷଭ ଉପରେ ଯାଉଥିଲେ । ପିଲାମାନେ କୌତୁହଳବଶତଃ ତାଙ୍କ ଉପରକୁ ଉତ୍ତପ୍ତ ବାଲି ନିକ୍ଷେପ କଲେ । ଶିବ-ପାର୍ବତୀ ଏଥିରେ ଉତ୍କ୍ଷିପ୍ତ ହୋଇ ଅଭିଶାପ ଦେବାକୁ ଯିବାବେଳେ ସିରିଆ ମହାଦେବୀ ସେଠାରେ ପହଞ୍ଚି ପିଲାମାନଙ୍କ ତରଫରୁ କ୍ଷମାପ୍ରାର୍ଥନା କଲେ, ଏବଂ ପିଲାମାନଙ୍କର ଦୋଷ ମାର୍ଜନା କରିବା ପାଇଁ ଆଶିଷ ଭିକ୍ଷାକଲେ । ଏଥିରେ ସନ୍ତୁଷ୍ଟ ହୋଇ ଶିବ-ପାର୍ବତୀ ତାଙ୍କର ତେରଜଣ ପିଲା ଚୈତ୍ରମାସରେ ଦଣ୍ଡ ନାଚ କରିବାକୁ ଉପଦେଶ ଦେଲେ । ସେହି ଦିନଠାରୁ ତେରଜଣ ଦଣ୍ଡନାଚ ଆରମ୍ଭ କରିଥାନ୍ତି । ଦଣ୍ଡନାଚର ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗରେ କିଏ କିପରି ଏହି ଦଣ୍ଡ ବ୍ରତ ପାଳନ କରିଥାନ୍ତି ତାହା ଗୁରୁ ଓ କବି ଯୋଗୀନ୍ଦ୍ର ପ୍ରଧାନ ପ୍ରବନ୍ଧ ପରିଶିଷ୍ଟ ୧ ରୁ ଜଣାଯାଏ ।

କବି ଶ୍ରୀ ପ୍ରଧାନ ପ୍ରକାର ଭେଦରେ ଷୋଳ ପ୍ରକାର ଦଣ୍ଡ ବିଷୟ ବର୍ଣ୍ଣନା କରିଛନ୍ତି । ଷୋଳ ଦଣ୍ଡ ଯଥା:- ଆହାର, ନିଦ୍ରା, ମୈଥୁନ, ଗୃହତ୍ୟାଗ, ପଦଗାମୀ, ଶ୍ମଶାନ, ଧୂଳି ଦଣ୍ଡ ଓ ପାଣି ଦଣ୍ଡ, ଅଗ୍ନି ଦଣ୍ଡ, ନାଚ ଦଣ୍ଡ, ପାକର୍ଷ୍ଣ, ଅଙ୍ଗପରୀକ୍ଷା (ଅଙ୍ଗ ଶୁଦ୍ଧ), ମେରୁଦଣ୍ଡ (ମେରୁରେ ସୂର୍ଯ୍ୟ) ପଟାର ଦଣ୍ଡ, ବଳିଦଣ୍ଡ, ଶୁଦ୍ଧିକ୍ରିୟା ଦଣ୍ଡ, କୁଢଭୋଜି ଦଣ୍ଡ ।

ଦଣ୍ଡନାଚର ଆଚାର ବିଧି:-

ଦଣ୍ଡନାଚ ଚୈତ୍ର - ବୈଶାଖ ମାସ ମହାବିଷୁବ ସଂକ୍ରାନ୍ତିର ଏକୋଇଶ ଦିନ କିମ୍ବା ତେରଦିନ ପୂର୍ବରୁ ଆରମ୍ଭ ହୁଏ । ପ୍ରଥମଦିନ ତେରଜଣ ଭୋକତା◆ ପ୍ରାତଃସ୍ନାନ କରି ମନ୍ଦିରରେ ପ୍ରବେଶ କରନ୍ତି । ପୂଜକ ବା ମାଳୀ ମହାଦେବଙ୍କ ପୂଜା ଆରମ୍ଭ କରେ ଓ ପରେ କାଳିକାଙ୍କ ପୂଜା ସାରି ବୋଦା ବଳି ଦେଇ ରାତ୍ରରେ ଭୋଜନ କରନ୍ତି । ତାପର ଦିନ ଉପବାସରେ ରହି ମନ୍ଦିରରେ ତେରଜଣଙ୍କର ହାତ ଲାଗି ଦଣ୍ଡ ଉଠାଯାଏ । ଦଣ୍ଡକୁ ଗୋଟିଏ ସ୍ଥାନରେ ରଖି ପ୍ରଥମ ତେରଜଣ ଓ ଯେଉଁମାନେ ମାନସିକ କରିଥାନ୍ତି ସେମାନେ ମିଶନ୍ତି । ଏପରିକି ଶତାର୍ଦ୍ଧରୁ ଅଧିକ ଲୋକ ଗୋଟିଏ ଖାବୁରେ◆◆ ଥିବା ଜଣାଯାଏ । ଦ୍ୱିତୀୟଦିନ ସମ୍ପୂର୍ଣ୍ଣ ଉପବାସ କରି ତୃତୀୟ ଦିନ ଧୂଳି ଦଣ୍ଡ ପ୍ରଭୃତି ସାରି ଅପରାହ୍ନ ୪ଟା ସମୟରେ ମୃଦୁ ପାନୀୟ (ଲିଆପଣା) ପାନ କରନ୍ତି । ତାପରେ ନିକଟସ୍ଥ ପୁଷ୍କରିଣୀରେ ପାଣି ଦଣ୍ଡ ସାରି ଏକ ନିର୍ଜନ ସ୍ଥାନରେ ଅକଟା, ଅବଟା, ଅଫୁଟା ଏପରିକି ବିନା ମସଲା,

◆ *ଦଣ୍ଡ ନାଚରେ ଅଂଶଗ୍ରହଣ କରୁଥିବା ଭକ୍ତମାନଙ୍କୁ ଭୋକତା, ଦଣ୍ଡୁଆ ବା ପାଟୁଆ କହନ୍ତି ।*

◆◆ *ଖାବୁ - ଦଣ୍ଡନାଚର ଦଳ, ଲିଆ - ଖଇ*

ବିନା ହଳଦୀ, ବିନା ଲୁଣରେ (ଅନେକ ସ୍ଥାନରେ ଲୁଣ ଗ୍ରହଣ କରନ୍ତି କିନ୍ତୁ ମହାଦେବଙ୍କ ଭୋଗପରେ ମିଶାନ୍ତି) ରନ୍ଧନ କରନ୍ତି । ଯେଉଁ ଭୋକତାର ଭାତରେ ଗୋଡି ବାହାରିବ, ସେ ମଧ ସେ ଅନ୍ନ ପରିତ୍ୟାଗ କରି ଉପବାସରେ ରହିବ । କୌଣସି ଶବ୍ଦ ଏପରିକି ପକ୍ଷୀର ରାବ ଶୁଣିପାରିଲେ କେହି ଖାଇବେ ନାହିଁ । ତେଣୁ ରାତ୍ରିର ବିଳମ୍ବିତ ପ୍ରହରରେ ଢ଼ୋଲ ଓ ତୂରୀରେ ବାଦନର ଘନ ନିର୍ଘୋଷ ମଧରେ ଅନ୍ନ ଗ୍ରହଣ କରିଥାନ୍ତି । ଅନ୍ନ ଗ୍ରହଣ ପରେ ଅଗ୍ନିଦଣ୍ଡ ଅନୁଷ୍ଠିତ ହୁଏ ।

ରାତ୍ରିରେ ଅନ୍ୟାନ୍ୟ ପାତ୍ରମାନେ ସଙ୍ଗୀତ, ନୃତ୍ୟ ଓ ଅଭିନୟ ମାଧମରେ ନାଟକ ପରିବେଷଣ କରନ୍ତି । ଦଣ୍ଡନାଚର ପ୍ରଧାନତଃ ଶିବ-ପାର୍ବତୀ ନୃତ୍ୟ, ଚଢ଼େଇଆନୃତ୍ୟ, ବୀଣାକାର ଗୀତ ପ୍ରଧାନ ସ୍ଥାନ ଅଧିକାର କରିଥାଏ । ଅନେକ ସ୍ଥାନରେ ବଡ଼ ବଡ଼ ଅପେରା ପାର୍ଟି କରି ଅପେରା ବା ଥିଏଟର ଆରମ୍ଭ କରି ଦେଲେଣି । ଏହିପରି ଉଦ୍‌ଯାପନ ଦିନ ବ୍ୟତୀତ ଅନ୍ୟଦିନ ପାଳନ ହୁଏ । ଶିବ ଓ ଶକ୍ତିଙ୍କର ପ୍ରତୀକ ରୂପେ ଦଣ୍ଡୁଆମାନେ ଦଣ୍ଡଧାରଣ କରି ଗାଁ ଗାଁ ବୁଲି ଦଣ୍ଡନାଚ ମାଧମରେ ସମସ୍ତଙ୍କର ମଙ୍ଗଳ ସକାଶେ ଶିବାରାଧନା କରିଥାନ୍ତି । ଗ୍ରାମରୁ ଗ୍ରାମକୁ ଗଲାବେଳେ ଯେଉଁ ଲୋକ ଦଣ୍ଡନାଚ କରିବାକୁ ମାନସିକ କରିଥାଏ, ତାଙ୍କ ଗୃହ ସମ୍ମୁଖରେ ପ୍ରଥମେ ଗୌରୀବେତ, ଘଟ କଳସ, ପତାକା ଓ ମୟୂରପୁଚ୍ଛ ପ୍ରଭୃତି ସ୍ଥାପନ କରିଥାଆନ୍ତି । ଦଣ୍ଡୁଆମାନେ ତାହାକୁ ନିମନ୍ତ୍ରଣ ବୋଲି ଭାବି ସେହିଦିନ ସେହିଠାରେ ଦଣ୍ଡ ଭାଙ୍ଗି ଥାନ୍ତି । ବୀଣାକାରିଆ ସମସ୍ତ ଦଣ୍ଡୁଆମାନଙ୍କୁ ଶୃଙ୍ଖଳିତ ଭାବେ ନଚାଇ ଦଣ୍ଡନାଚର ସୁପରିଚାଳନା କରିଥାନ୍ତି । ମଧାହ୍ନ ସମୟରେ ଉତ୍ତପ୍ତ ବାଲିରେ ଦଣ୍ଡୁଆମାନେ ଦଣ୍ଡ ଭାଙ୍ଗିବାକୁ ଭୂମି ଦଣ୍ଡ ବା ଧୂଳିଦଣ୍ଡ କହନ୍ତି । ତାପରେ ପୂର୍ବଦିନ ପରି ଅନ୍ୟ ଦଣ୍ଡମାନଙ୍କର ପୁନରାବୃତ୍ତି ହୁଏ ।

ଶେଷଦିନ ଅର୍ଥାତ୍ ମହାବିଷୁବ ସଂକ୍ରାନ୍ତି ଦିନ ସମସ୍ତ ଭୋକତାମାନେ ପୁଣି ମନ୍ଦିର ବା 'କାମନା' ଗୃହକୁ ଫେରି ଆସନ୍ତି । ସେଠାରେ 'ମେରୁ' ହୁଏ । ମେରୁପରି ପାଟଭୋକତା ପୁଣି ଦଣ୍ଡକୁ ଯଥାସ୍ଥାନରେ ସ୍ଥାପନ କରି ଫେରି ଆସନ୍ତି । କାମନାଗୃହ ଓ ଦଣ୍ଡନିର୍ମାଣ ବିଷୟରେ କବି ଯୋଗୀନ୍ଦ୍ର ପ୍ରଧାନ ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି ।

ଦଣ୍ଡନାଚର ଲୋକ ସାହିତ୍ୟ ଓ ଲେଖକ:-

ଗବେଷକ ସୁରେନ୍ଦ୍ର ପ୍ରଧାନ ଦଣ୍ଡନାଚର ଲୋକ ସାହିତ୍ୟକୁ ପରିପୁଷ୍ଟ କରିଥିବା ବହୁ କବି ଲେଖକଙ୍କ ନାମ ପ୍ରକାଶ କରିଛନ୍ତି । ତଥାପି ବହୁ ଲେଖକ କବିଙ୍କ ନାମ ଦୃଷ୍ଟି ଅଗୋଚରରେ ରହିଯାଇଛି । ପୁରୀ ଜିଲ୍ଲା କଣ୍ଟାବଣିଆ ଗ୍ରାମର ଆନନ୍ଦ ଛାଲି, କବି ସୂର୍ଯ୍ୟ ନଗରର ଯୋଗିଆ ମଲ୍ଲିକ, ବ୍ରହ୍ମପୁରର ସନ୍ନ୍ୟାସୀ ନାୟକ, ଢିଲୁଣ୍ଡର ନୀଳକଣ୍ଠ ପଟ୍ଟନାୟକ, ମୁଣ୍ଡମରେଇର ଦଣ୍ଡପାଣି ଜେନା, ପଦ୍ମପୁରର ଧୋବା ପ୍ରଧାନ, ରଇବାରିଆ ପ୍ରଧାନ, ସୁବୁଦ୍ଧି ବାହାକ,, ରେଢ଼ାଖୋଲ ତର୍ଲଚାର ଯୋଗୀନ୍ଦ୍ର ପ୍ରଧାନଙ୍କ ନାମ ଉଲ୍ଲେଖଯୋଗ୍ୟ ।

ବିଭିନ୍ନ ସମୟରେ ଦଣ୍ଡନାଚ ସମ୍ବନ୍ଧରେ ଯେଉଁ ଲେଖକମାନେ ପ୍ରବନ୍ଧ ପ୍ରକାଶ କରିଛନ୍ତି, ସେମାନେ ହେଲେ ଗବେଷକ ସର୍ବଶ୍ରୀ ସୁରେନ୍ଦ୍ର ପ୍ରଧାନ, ଭାଗୀରଥି ନେପାକ, କୃପାସିନ୍ଧୁ ବିଶ୍ୱାଳ, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ହୃଦମଣି ପ୍ରଧାନ, ବଶିଷ୍ଠ ପୂଜାହାରୀ ପ୍ରଭୃତି ।

ଦଣ୍ଡନାଚରେ 'ତେର' ସଂଖ୍ୟାଟି ସବୁବେଳେ ଶୁଭବୋଲି ତେରଜଣ ଭୋକତା ପ୍ରଥମେ ଦଣ୍ଡ ଉଠାଇଥାନ୍ତି । ଦଣ୍ଡନାଚରେ ବିରାଡ଼ି ଅଶୁଭ ନୁହେଁ ବୋଲି ଦର୍ଶାଯାଇଛି । ଦଣ୍ଡନାଚର 'ପତ୍ର ଶବରା' ଚରିତ୍ର କୋଳରେ ଗୋଟିଏ ବିରାଡ଼ି ଧରିଥିବାର ଦେଖାଯାଏ । ଅନାର୍ଯ୍ୟ ସଂହିତାରେ କବି ଯୋଗୀମଲିକ କହିଛନ୍ତି:-

''ବିରାଡି ମହିମା କି ଦେବି ଉପମା
ଅନୁକୂଳ କଲାବେଳେ
ଘଟେ ସର୍ବ ଶୁଭ ନହୁଏ ଅଶୁଭ
ତେଣୁ ବିରାଢେତା କରେ ।''

(ଯୋଗୀମଲିକଙ୍କ ରଚନାରୁ ଉଦ୍ଧୃତ)

ଦଣ୍ଡନାଚ ଏହିପରି ବହୁବିଧ କୁସଂସ୍କାର ବିରୁଦ୍ଧରେ ପ୍ରଚାର କରେ । ଦଣ୍ଡନାଚର ଗୁରୁ ଓ କବି ଯୋଗୀନ୍ଦ୍ର ପ୍ରଧାନ ତାଙ୍କର 'ଦଣ୍ଡ ବିଧାନ' ବା 'ପଞ୍ଚ ଦେବତାଙ୍କ ବନ୍ଦନା' ପଦ୍ୟରେ ଦଣ୍ଡନାଚର ବିଧାନ ଉତ୍ପତ୍ତି, କାମନା ଗୃହ ନିର୍ମାଣ ବିଷୟ ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି । ତାଙ୍କର ଅପ୍ରକାଶିତ ପାଣ୍ଡୁଲିପିର ଦଣ୍ଡ ବିଧାନ ଅବିକଳ ଉଦ୍ଧୃତ କରାଗଲା ।

କରମା ନାଚ:-

ଓଡ଼ିଶାର ବ୍ରତ, ଓଷା ପର୍ବଗୁଡ଼ିକ ସାଧାରଣତଃ ଚତୁର୍ମାସ୍ୟା ସମୟରେ ପାଳିତ ହୋଇଥାଏ । ଓଡ଼ିଶା ଗୋଟିଏ କୃଷି ପ୍ରଧାନ ରାଜ୍ୟ ହୋଇଥିବାରୁ ଅକ୍ଷୟ ତୃତୀୟା ଠାରୁ ଧାନବୁଣା ଆରମ୍ଭ କରି ଭାଦ୍ର ଓ ଆଶ୍ୱିନ ମାସଠାରୁ ମାର୍ଗଶୀର ମାସ ପର୍ଯ୍ୟନ୍ତ ଧାନ ପ୍ରଭୃତି ଶସ୍ୟ ଅମଳ କରିଥାନ୍ତି । ଓଡ଼ିଶାର ପଶ୍ଚିମାଞ୍ଚଳରେ ସାଧାରଣତଃ ଛୋଟଧାନ କରାଯାଇଥାଏ । ଭାଦ୍ରମାସ ପରେ ପରେ ତାହାର ଅମଳ ଆରମ୍ଭ ହୁଏ । ଅନ୍ୟାନ୍ୟ ଫସଲ ଯଥା:- ଗୁଞ୍ଜ, କୋଦୁଅ,, ମାଣ୍ଡିଆ, କାଙ୍ଗୁ, ମକା ପ୍ରଭୃତି ଏ ସମୟ ମଧ୍ୟରେ ଅମଳ ହୋଇଥାଏ । ସାଧାରଣତଃ ପଶ୍ଚିମ ଓଡ଼ିଶାରେ ଏହି ସମୟରେ ନୂଆଧାନ ଖାଇବା ପାଇଁ 'ନବାନ୍ନ' ବା 'ନୂଆଖାଇ' ପର୍ବ ପାଳିତ ହୁଏ । ଏହି ସମୟରେ ଅର୍ଥାତ୍ ଭାଦ୍ରବରେ 'କରମା' ପରବ ପାଳନ କରାଯାଏ । ପଲ୍ଲୀ ଅଞ୍ଚଳର କବି ଅଭିମନ୍ୟୁ ପ୍ରଧାନ 'କର୍ମସ୍ୱାମୀ ପୂଜା' ପୁସ୍ତକରେ ଲେଖିଛନ୍ତି:-

''ଶ୍ରାବଣ ଶୁକ୍ଳପକ୍ଷରେ ଏକାଦଶୀ ତିଥି
କର୍ମାପୂଜା ଆରମ୍ଭିଲେ ମନେକରି ପ୍ରୀତି

ଖୋଳ, ମାଦଳ,କର୍ତ୍ତାଳ, ତଣ୍ଟୁଆଦି ବାଇ
ଶବର ଶବରୀ ନୃତ୍ୟ କଲେଗୀତ ଗାଇ ।''

ପଶ୍ଚିମ ଓଡ଼ିଶାରେ ବିଶେଷତଃ ସମ୍ବଲପୁର, ବଲାଙ୍ଗୀର, ସୁନ୍ଦରଗଡ, କେନ୍ଦୁଝର, ମୟୂରଭଞ୍ଜ ଓ ଢେଙ୍କାନାଳ ଆଦି ଅଞ୍ଚଳରେ ରହୁଥିବା ଆଦିବାସୀମାନେ କରମା ପର୍ବକୁ ସେମାନଙ୍କର ଜାତୀୟ ପର୍ବ ରୂପେ ପାଳନ କରନ୍ତି । ଆଦିବାସୀମାନଙ୍କ ମଧ୍ୟରେ କୋହ୍ଲ, ବିଂଝାଲ, କିସାନ, ଖଡ଼ିଆ, ମିର୍ଦ୍ଧା, ଓରାଓଁ, ସହଁରା ଆଦି ଲୋକମାନେ ଏହି ପର୍ବ ପାଳନ କରିଥାନ୍ତି । ଅଣ ଆଦିବାସୀମାନଙ୍କ ମଧ୍ୟରେ ଗଣ୍ଡା (ପାଣ) ଘାସି (ଡମ) ଚମାର (ମୋଚି) ଆଦି ଲୋକମାନେ କରମ ସାନୀଙ୍କ ପୂଜା କରିଥାନ୍ତି ।

ବିହାର ପ୍ରଦେଶରେ 'କରମା' ବା କରମା ଯଦୁର ନୃତ୍ୟ ଦେଖିବାକୁ ମିଳେ । କେତେକଙ୍କ ମତରେ ଏହା ହେଉଛି ଶୈବ ଧର୍ମାନୁଷ୍ଠାନ । ଆୟୁଷ ବୃଦ୍ଧି ଓ ଉତ୍ତମ ଫସଲ ନିମନ୍ତେ ଶିବ ଉପାସନାର ମାଧ୍ୟମବୋଲି ଅନ୍ୟକେତେକ ମତ ଉଦ୍ଧାରକରି କୁମାର ହସନ୍ ତାଙ୍କ ପୁସ୍ତକ 'ସମ୍ବଲପୁର ଲୋକସାହିତ୍ୟ' ରେ ଦର୍ଶାଇଛନ୍ତି । କିନ୍ତୁ ପ୍ରକୃତରେ ଏହା ଶୈବ ଉପାସନା ନୁହେଁ, ଶକ୍ତି ଉପାସନା । ତାଙ୍କର ନିଜଲେଖାରେ '' ମା କରମ ସାନୀ '' ବୋଲି ସମ୍ବୋଧିତ କରିଛନ୍ତି । ଯଥା:-

''ଜୟ ଜୟ ଗୋ କରମସାନୀ    ଭକ୍ତ ଭାବ ଅନ୍ତରଯାମୀ
ନିର୍ଧନ କେ କରୁ ଧନ ଦାନ
ବନ୍ଧ୍ୟାକେ ସନ୍ତାନ ଦେଇ    ଦୁର୍ଦ୍ଦଶା ସକଳ ଫେଇ
ଅନାଥକେ କରୁ ଭାଗ୍ୟବାନ
ଗୋ ମା କରମ ସାନୀ
ତୋର ପାଦେ ଶରଣ ମାଗିଲି ଗୋ ମାଁ କରମସାନୀ'' ।

ଶରତ୍ କାଳରେ ଭାଦ୍ରବ ଶୁକ୍ଳ ଏକାଦଶୀ ତିଥିରେ କରମ୍‌ସାନୀଙ୍କ ପୂଜା ଉପଲକ୍ଷେ କରମାଗୀତ, ମାଦଲ (ମାଦଳ)ର ତାଳେ ତାଳେ ଯୁବକ ଯୁବତୀମାନେ ଧାଡ଼ି ଧାଡ଼ି ହୋଇ୍ ନାଚ ଓ ଗୀତ ଆରମ୍ଭ କରିଥାନ୍ତି । ସେମାନେ ଗାଆନ୍ତି—

''ପ୍ରଥମେ ବନ୍ଦନା କରେ    କରମ୍ ସାନୀକେ
ଦୁତୀୟେ ବନ୍ଦନା କରେ    ଗାଁର ଆଦି ମାତାକେ
ତୃତୀୟେ ବନ୍ଦନା କରେ    ଗାଁର ପିତାମାତାକେ
ଚତୁର୍ଥେ ବନ୍ଦନା କରେ    ଗାଁର ଶିରୀ ସମଲାଇକେ
ପୁରୁବ ବନ୍ଦେ    ପଶ୍ଚିମ ବନ୍ଦେ
ଉତ୍ତର ବନ୍ଦେ    ଦକ୍ଷିଣ ବନ୍ଦେ
ବନ୍ଦେ କରମ ସାନୀକେ ।'' ଇତ୍ୟାଦି

କରମା ନାଚର ଆଚାର ବିଧି:-

ଭାଦ୍ରବ ଏକାଦଶୀ ଦିନ ସକାଳୁ ଗ୍ରାମ ମଝିରେ ଏକବେଦୀ ନିର୍ମାଣ କରାଯାଏ । ବେଦୀର ଚାରି କଡରେ ଚାରୋଟି ବାଉଁଶ ପୋତି ତା ଉପରେ ଛାମୁଣ୍ଡିଆ ବନ୍ଧାଯାଏ । ସେଥିରେ ଆମ୍ବପତ୍ର, ଆମ୍ବଡାଳ, କର୍ଣ୍ଣଫୁଲ ଆଦି ଟଙ୍ଗାଇ ବା ଝୁଲାଇ ସାଜସଜ୍ଜା କରାଯାଏ । କରମା ପର୍ବ ଯେଉଁମାନେ ପାଳନ କରନ୍ତି, ସେମାନେ ଏକାଦଶୀ ଦିନ ଉପବାସ ରହିଥାନ୍ତି । ସକାଳୁ ଉଠି ସ୍ନାନ ସାରି ପୂଜା ସାମଗ୍ରୀ ଯୋଗାଡରେ ଥାଆନ୍ତି । ମାନ୍ଦଲିଆ (ମାଦଳ ବାଜାବାଲା) ପ୍ରଥମେ ଆସି ବେଦୀ ପାଖରେ ବାଜା ବଜେଇଲେ ସମସ୍ତେ ସେଠାରେ ଗୁଣ୍ଡ ହୁଅନ୍ତି । ଏହା ପରେ ନିକଟସ୍ଥ ଜଙ୍ଗଲକୁ କରମା ଡାଳ ଆଣିବା ପାଇଁ ସମସ୍ତେ ଏକ ଶୋଭଯାତ୍ରାରେ ବାହାରି ପଡନ୍ତି । ଗାଁର ଝାଙ୍କର ବା ଦେହୁରୀ ଆଗେ ଆଗେ ଚାଲନ୍ତି । ଅନ୍ୟ ସ୍ତ୍ରୀ ପୁରୁଷ ଲୋକେ ଧାଡ଼ି ବାନ୍ଧି ଚାଲନ୍ତି । ବାଜା ବାଜୁଥାଏ । ପୁଅଝିଅମାନେ ଗୀତ ଗାଇ ଚାଲିଥାନ୍ତି ।

''କରମାକେ ଏକାଦଶୀ<br>
ଫୁଲଫୁଟେ ବାରବାସୀ ।<br>
ଫୁଲର ନାଁ ଜାଣି ଯୁଇରେ<br>
କରମ୍‌ସାନୀ ନାଚେ ଥେଇ ଥେଇ''- ଇତ୍ୟାଦି ।

ଝାଙ୍କର ବା ଦେହୁରୀ ହାତରେ ନୂଆ ଲୁଗା, ଚୂଆ, ସିନ୍ଦୂର, ଫୁଲ ଓ ଭୋଗ ଧରିଥାଏ । ଅନ୍ୟ ଜଣେ ନୂଆମାଟି ପୂର୍ଣ୍ଣ କଳସ ଧରିଥାଏ । 'କରମାଡାଳ' କେବଳ ହଲନ୍ ଗଛ (ହଳନ୍ଦ), ରେଙ୍ଗାଲଗଛ (ଶାଳ) ବା ଅଁଳା ଗଛର ଡାଳ ହୋଇଥିବା ବିଧେୟ । ଉପରୋକ୍ତ ଯେଉଁ ଗଛର ଡାଳ ଭୂମି ଛୁଇଁ ନଥିବ ଓ ପତ୍ର ନୀରୋଗ ଥିବ, ସେହି ଗଛର ଡାଳ ଉପଯୁକ୍ତ ବୋଲି ବିବେଚିତ ହୁଏ ।

କରମାଗଛର ଠାବ ହେଲାପରେ ସେହି ଗଛକୁ ଚୂଆ ସିନ୍ଦୂରବୋଳି, ଧୂପ ଦୀପ ଦେଇ ପୂଜା କରାଯାଏ । ସଙ୍ଗେ ସଙ୍ଗେ ମାଦଳନାଦ ଓ ଶଙ୍ଖ ହୁଳହୁଳିରେ ସ୍ଥାନଟି ପୂରିଉଠେ । ସମସ୍ତେ ଗଛ ଦେବତାକୁ ମୁଣ୍ଡିଆ ମାରନ୍ତି । ଜଣେ ତା ଉପରେ ଚଢ଼ି ଭଲ ଡାଳଟିଏ ଏକାଚୋଟରେ କାଟି ଝାଙ୍କର ବା ଦେହୁରୀ ହାତକୁ ବଢ଼ାଇଦିଏ ।

''ଶୁନ ଶୁନ ସାଧୁଜନ କରମ୍‌ସାନୀର ବିଧାନ<br>
ଯାହା ବିହି କରିଛେ ଭିଆନ,<br>
ଏକ ଚୁଟେ ଡାଲହାନି ଉପରୁ ତଲକୁ ଆନି<br>
ଆସ ଆସ ଦେବୀ ଠାକୁରାନୀ ମା<br>
ବାକ୍ୟ ଦେବୀ ଶଙ୍କର କାମେନୀ । ''

ଦୁର୍ଗାପୂଜା ପୂର୍ବରୁ ହିନ୍ଦୁମାନଙ୍କର ବେଲଗଛର ପୂଜା ବିଧି ଅଛି । ତାହାକୁ ବେଲବରଣ ପୂଜା କହନ୍ତି । ସେହିପରି କରମାଗଛ ପୂଜାକୁ 'ବରନ୍‌ପୂଜା' କହନ୍ତି । କରମାଡାଳକୁ ନୂଆ ଲୁଗା ପିନ୍ଧାଇ ଶୋଭାଯାତ୍ରାରେ ବେଦୀ ଉପରକୁ ଅଣାଯାଏ ।

ବେଦୀ ଉପରେ ନୂଆ ମାଟିହାଣ୍ଡିରେ ମାଟି ଭରି କରମାଡାଳ ପୋତା ହୁଏ । ଝାଙ୍କର ବା ଦେହୁରୀ ପୂଜା ପାଠ କଲାପରେ କରମା ଡାଳକୁ 'କରମ୍‌ସାନୀ' ଦେବୀ ବୋଲି ଧରାଯାଏ । ତାଙ୍କ ପାଖରେ ପିଠାପଣା, ମଦ ଭୋଗ ଲଗାଯାଏ । କୁକୁଡାବଳି ଦିଆଯାଏ । ମଦର ଦୀପ ଜାଳି ବନ୍ଦାପନା କରାଯାଏ । ମାଦଳ ବାଜୁଥାଏ । ପୂଜା ଶେଷରେ ସମସ୍ତେ ମୁଣ୍ଡିଆମାରି କରମା କଥାଣୀ ଶୁଣନ୍ତି । କଥାଣୀରେ କରମ୍‌ସାନୀଙ୍କ ମହିମା ବର୍ଣ୍ଣନା ହୋଇଥାଏ । ଝାଙ୍କର କଥାଣି କହି ସାରିଲା ପରେ ଉପବାସ ରହିଥିବା ସ୍ତ୍ରୀ ଓ ପୁରୁଷ ଉପବାସ ଭାଙ୍ଗି ଭୋଗ ପାଇଥାନ୍ତି ।

କରମାପୂଜା ଆଦିବାସୀଙ୍କ ବୃକ୍ଷପୂଜା ତଥା ଆଦିମ ମାତୃପୂଜାର ଚମତ୍କାର ସମନ୍ୱୟ । ପ୍ରତ୍ୟକ୍ଷଦେବୀ କରମସାନୀ ଦୁର୍ଗାଙ୍କର ପ୍ରତୀକ । ତାଙ୍କୁ ଦୁର୍ଗାଙ୍କ ରୂପେ ପୂଜା କରାଯାଇଥାଏ । ତାଙ୍କୁ 'ତ୍ରିଲୋକ ଜନନୀ' ହିମବନ୍ତ ରାଜକନ୍ୟା ବୋଲି ଅଭିହିତ କରାଯାଏ ।

''ଜୟ ଜୟ କରମସାନୀ ତ୍ରିଲୋକଜନନୀ
ହେମବନ୍ତ ରାଜାଙ୍କ ଦୁଲଣୀ ଗୋ ।''

ଅଧ୍ୟାପକ ହାତିବନ୍ଧୁ ମିର୍ଦ୍ଧା କହନ୍ତି, କରମାଡାଳ ହେଉଛି 'ଦାରୁ ଦେବତାର ପ୍ରତୀକ' । ଜଗନ୍ନାଥ ଦାରୁଦେବତାର ହିଁ ରୂପାନ୍ତର । କରମାପୂଜାରେ କରମସାନୀଙ୍କୁ ଖୁସି କରିବା ପାଇଁ ପୂଜା ଓ କଥାଣୀ ପରେ ରାତି ସାରା କରମାନାଚ ଓ ଗୀତର ଆସର ଜମେ । ଯୁବକ-ଯୁବତୀମାନେ ମହୁଲୀ ହାଣ୍ଡିଆ ପିଇ ନିଜ ନିଜ ମଧରେ ସାନବଡ କ୍ରମେ ସଜାଡି ହୋଇ, ମାଦଳିଆ ଆଗରେ ଧାଡ଼ି ହୋଇ କାନ୍ଧକୁ କାନ୍ଧ ରଖି, ଅଣ୍ଟାରେ ହାତ ଛନ୍ଦି ଏକାଠି ହୋଇ ନୃତ୍ୟ କରନ୍ତି । ହାତ ଛନ୍ଦାଛନ୍ଦି ହୋଇ ନାଚିଲା ବେଳେ ଏକ ମୁଣ୍ଡଳି ଆକାରରେ ନାଚନ୍ତି । ସମୟ ସମୟରେ ଲମ୍ବା ଧାଡ଼ିରେ ନାଚନ୍ତି । ଯିଏ ସେହି ନୃତ୍ୟ ନଦେଖିଛି, ସେ ତାର ମାଧୁର୍ଯ୍ୟ ଅନୁଭବ କରିପାରିବ ନାହିଁ ।

କରମାନାଚରେ ଆଗେ ଗୀତ ବୋଲା ହୁଏ । ତା'ପରେ ନାଚ ହୁଏ । ନାଚ ହେବା ସମୟରେ ଗୀତ ବୋଲା ଯାଏ ନାହିଁ । କେବଳ ବାଜା ବାଜେ । କରମସାନୀଙ୍କୁ ଖୁସିକଲେ ଗାଁର, ପରିବାରର, ଗୋରୁଗାଈମାନଙ୍କର ମଙ୍ଗଳ ସାଧିତ ହୁଏ; ତେଣୁ ସେମାନେ ଗାଇଥାନ୍ତି-

କୁହାର ଗୋ ମାଁ କରମସାନୀ
ଅପୁତ୍ରିକେ ପୁତ୍ର ଦାନୀ
ଦୟା କରିଥିବୁ ମାଗୋ ମୋତେ
ପୁତ୍ର ଦେବୁ ଧନଦେବୁ ମାଁ
ଗୁହାଇକେ ଧେନୁ ଦେବୁ

ବାନା ତୋର ଉଡିବ ଜଗତେ
ଗୋ ମାଁ କରମସାନୀ
ବିପରି କାଳରେ ଡାକେଁ ତୋତେ ।◆

ସକାଳ କୁକୁଡା ଡାକ ସମୟରେ କରମା ନାଚ ଶେଷ ହୁଏ । କରମାଡାଳକୁ ଝାଙ୍କର ବା ଦେହୁରୀ ଉପାଡି ଥାଆନ୍ତି । ଆଦିବାସୀ ମିର୍ଦ୍ଧାମାନେ ତିନିଜଣ ଯୁବତୀ ଝିଅ ବେଦୀରୁ କରମାଡାଳ ଉପାଡି ଥାଆନ୍ତି । ପୁଣି ଶୋଭାଯାତ୍ରାରେ ମାଦଳ ବାଜେ । କରମା ଡାଳକୁ ନଦୀ, ଝରଣା, ପୁଷ୍କରିଣୀରେ ବିସର୍ଜନ କରି କରମସାନୀକୁ ମୁଣ୍ଡିଆମାରି, ଘରକୁ ଫେରନ୍ତି । ତାପରେ ଗ୍ରାମରେ ଭୋଜିକରି ଖୁସି ମଉଜରେ ଦିନସାରା କଟାଇଥାନ୍ତି ।

କରମା ନାଚର ଲୋକ ସାହିତ୍ୟ:-

ଲୋକ ନୃତ୍ୟର ଗବେଷକ ଭାଗୀରଥି ନେପାକ ସର୍ବ ପ୍ରଥମେ କରମା ନାଚ ବିଷୟରେ ଏକ ପୁସ୍ତକ ରଚନା କରିଛନ୍ତି । ସେ କରମା ପର୍ବ ଓ ନାମ ବିଷୟରେ ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ଅନ୍ୟ ଲେଖକମାନଙ୍କ ମଧ୍ୟରେ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି, ଶ୍ରୀମତୀ ଶକୁନ୍ତଳା ବିଳିୟାରସିଂହ, ବଶିଷ୍ଠ ପୂଜାହାରୀ, ଅଧ୍ୟାପକ ହାଡିବନ୍ଧୁ ମିର୍ଦ୍ଧା, କୁମାର ହସନ୍ ଓ ଅଭିମନ୍ୟୁ ପ୍ରଧାନଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଡାଲଖାଇନାଚ:-

ଶାରଦୀୟ ପାର୍ବଣରେ ଭାରତର ସନ୍ତାନମାନେ ବିଶ୍ୱ ପ୍ରକୃତିର ଉପାସନା କରିଆସିଛନ୍ତି । ଏହି ଶରତ କାଳରେ ଆମ ଓଡ଼ିଶାରେ ନବାନ୍ନ ଭକ୍ଷଣ ଉତ୍ସବ ଅନୁଷ୍ଠିତ ହୁଏ । କୃଷି ସଭ୍ୟତାର ପ୍ରବର୍ତ୍ତନ ପୂର୍ବରୁ ଆରଣ୍ୟକ ଯାଯାବରମାନେ ଶିକାର ଉପରେ ହିଁ ନିର୍ଭର କରୁଥିଲେ । ଶରତ୍ ଋତୁରେ ସେମାନେ ଶିକାର ଅନ୍ୱେଷଣରେ ଯାଇଥାନ୍ତି ଏବଂ ନୂତନ ଶିକାର ପାଇ ଆନନ୍ଦ ଉଲ୍ଲାସ ମଧ୍ୟରେ ଜ୍ୟୋତ୍ସ୍ନାୟିତ ଶରତ ରଜନୀକୁ ଉପଭୋଗ କରିଥାନ୍ତି । ଏହି ଶରତର ଆଶ୍ୱିନ ଶୁକ୍ଳ ଅଷ୍ଟମୀକୁ "ଦୁର୍ଗାଷ୍ଟମୀ" କୁହାଯାଏ । ଦୁର୍ଗାଷ୍ଟମୀ ଦିନ ଝିଅମାନେ "ଭାଇଜାଉଁତିଆ" ଓଷା ପାଳନ କରନ୍ତି । ଏହି ସମୟରେ ଭଉଣୀମାନେ ଭାଇଙ୍କ ଘରକୁ ଯାଇ ଭାଇମାନଙ୍କୁ ବନ୍ଦାଣ କରନ୍ତି ଏବଂ ଭାଇଙ୍କର ଦୀର୍ଘଜୀବନ କାମନାକରି ଦେବୀ ଦୁର୍ଗାଙ୍କ ପାଖରେ ଆଶୀର୍ବାଦ ଭିକ୍ଷା କରନ୍ତି, ଏବଂ ଭାଇମାନେ ଭଉଣୀମାନଙ୍କୁ ନୂତନ ବସ୍ତ୍ର ପ୍ରଦାନ କରି ଭାଇ ଭଉଣୀଙ୍କ ସ୍ନେହ ଅତୁଟ ରଖିଥାନ୍ତି । ଠିକ୍ ଏହି ସମୟରେ ଓଡ଼ିଶାର ପଶ୍ଚିମାଞ୍ଚଳରେ ଆଦିବାସୀ ଯୁବତୀମାନେ 'ଡାଲଖାଇ' ଓଷା ଆରମ୍ଭ କରିଥାନ୍ତି ।

ଡାଲଖାଇ ଓଷା ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ, ପଦମ୍ପୁର, ସୋନପୁର, ବୌଦ, ଆଠମଲ୍ଲିକ ଓ ରେଢ଼ାଖୋଲ ବୁଢ଼ୀ ମାହେଶ୍ୱରୀଙ୍କ ପାଖରେ ପାଳିତ ହୁଏ ।

◆ *ଓଡ଼ିଶାର ଲୋକନୃତ୍ୟ "କରମା" - ଭାଗୀରଥି ନେପାକ*

ସୋନପୁର, ବଲାଙ୍ଗୀର, ପାଟଣାଗଡ, ରାଜବୋଡାସମ୍ବର ପ୍ରଭୃତି ଅଞ୍ଚଳରେ ଏହି ପର୍ବ ବିଶେଷ ଭାବେ ପାଳିତ ହୁଏ । ରେଢ଼ାଖୋଲରେ ଏହାର ପ୍ରଭାବ ନଥିଲେ ମଧ ବୁରୁଡା ମାହେଶ୍ୱରୀଙ୍କ ଠାରେ ଏହି ପର୍ବ ପାଳିତ ହୋଇ ଆସୁଅଛି । ଡାଲଖାଇର ଗୁରୁ ୪ କେଉଟି ପ୍ରଧାନ ସେଠାରେ ଡାଲଖାଇ ନାଚ ଶିକ୍ଷା ଦେଉଥିଲେ । ଏ ଗ୍ରାମରେ ମାହେଶ୍ୱରୀ ପ୍ରତ୍ୟକ୍ଷ ଦେବୀ । ଲୋକଙ୍କର ବିଶ୍ୱାସ ମହାମାରୀ, ବସନ୍ତ ଓ ଗୋମଡକ ସମୟରେ ମାହେଶ୍ୱରୀଙ୍କୁ ଶୋଭାଯାତ୍ରାରେ ରେଢ଼ାଖୋଲର ରଥସାହି, ହଳିଆସାହି (ଯଦୁମଣି ପାଟଣା), କର୍ଣ୍ଣଥ ସାହି, ନୂଆସାହି, ଖନ୍ଦାଢ଼ିପ, କଳିନ୍ଦର ଗ୍ରାମରେ ବୁଲାଇ ନେଲେ ଦୈବୀ ଦୁର୍ବିପାକରୁ ମଧ ରକ୍ଷା ମିଳେ ।

ଆଶ୍ୱିନ ଶୁକ୍ଳ ଅଷ୍ଟମୀଦିନ ଓଷ୍ଟାଇତୀମାନେ ''କଳାସିକୁଠି' (ଓଷାକୋଠୀ) ବା 'ଦେବୀଘରେ' ସମବେତ ହୋଇଥାନ୍ତି । କୁଠି ବା ଘରର କାନ୍ଥରେ ବିଭିନ୍ନ ଦେବଦେବୀଙ୍କ ଚିତ୍ର ପିଠୋଉ ଓ ଗେରୁରେ ଅଙ୍କା ଯାଇଥାଏ । ଏହି ଚିତ୍ର-ଦେବୀମାନଙ୍କୁ ଚୁଆ, ସିନ୍ଦୂର, ଗୁଗ୍ଗୁଳ ଧୂପ, ଲାଲରଙ୍ଗର ଫୁଲ, ଛିଟକନା, ଭୋଗରାଗ ଦିଆହୁଏ । ଚିତ୍ରତଳେ ଯନ୍ତ୍ର ଆଙ୍କି କଳସୀ ବସାଯାଏ । କଳସୀ ପୂଜା ପାଆନ୍ତି । ଏହି ପୂଜାରେ ବ୍ରାହ୍ମଣ ପୁରୋହିତ ଆବଶ୍ୟକ ହୁଏ ନାହିଁ । ଆଦିବାସୀ ଝିଅଙ୍କ ମଧ୍ୟରୁ ଯେକେହି ଜଣେ ପୂଜା କରିଥାଏ ।

ପୂଜାପରେ 'ଉଷାକଥାନି' ବା ଓଷାକଥା ଗୀତ ଆକାରରେ ବୋଲାଯାଏ । ଏହି ଓଷାକଥା ଅନୁସାରେ ସ୍ୱର୍ଗରେ ମା ଦୁର୍ଗା ଡାଲଖାଇ ଓଷା ଆରମ୍ଭ କରିଥିଲେ ଓ ପରେ ମର୍ତ୍ତ୍ୟରେ ଆଦିବାସୀ ରାଜକୁମାରୀ 'ରଇଳାବତୀ' ଏହି ପୂଜାକୁ ପ୍ରଥମଥର ଲାଗି ଆରମ୍ଭ କଲେ । ମୁଖ୍ୟ ଓଷେଇତି ଧୂନ କେଲ୍ ବାଜା ବଜାଇ ବଜାଇ 'ଉଷା କଥାନୀ' ଗାଉଥାଏ ।

ବନ୍ଦୁଅଛେଁ ମୁଇଁ ଡାଲଖାଇରେ
ବନ୍ଦୁଅଛେଁ ମୁଇଁ ମହାମାଇ
ବନ୍ଦୁଅଛେଁ ମୁଇଁ କମଲାଇ
ତୋ ପାଦେ ଶରନ ଲୋମାତ, ଫେଡ଼ିଦେ କଷଣ
ବାଜ ବାଜ ମୋ ଝୁମକା ବାଡ଼ିରେ
ବାଜ ବାଜ ମୋ ରନ୍ ହଁଡି
ବାଜୁଥିବୁରେ ଶିବ ଧନୁ
ରୁମୁଝୁମୁ ଡ ରୁନୁଝୁନୁ
ଚାଚେରୀ ଖେଳିବରେ ବେଦୀ, ଉଲାସେ ନାଚିବ
ଆସିଗଲା ମୋର ଶୁଭ୍ରକେଶୀ
ଆସିଗଲା ମୋର ବନବାସୀ

ବିଶ୍ୱ ମୋହିନୀ ଲୋକ ପାର୍ବତୀ ନନ୍ଦିନୀ......

ଡାଲଖାଇରେ......◆

ଉଷା କଥାନି ଉପରେ ପ୍ରସାଦ ପାଇଁ ଦେବୀଙ୍କୁ ଖୁସି କରିବା ଲାଗି ଡାଲଖାଇନାଚ ନାଚିଥାନ୍ତି ।

ଡାଲଖାଇର ଉପ୍ତ୍ତି ସମ୍ପର୍କରେ ବିଭିନ୍ନ କିମ୍ବଦନ୍ତୀ ମଧ୍ୟରୁ ଗୋଟିଏ ହେଲା- ଆଦିବାସୀ ରାଜକୁମାରୀ ରଇଲାବତୀ କଥା । ପୂର୍ବକାଳରେ କୋଶଳ ଦେଶରେ 'ନଳିତ' ନାମରେ ଜଣେ ଆଦିବାସୀ ରହୁଥିଲେ । ତାଙ୍କର ନୀଳାବତୀ ନାମରେ ପାଟରାଣୀଥିଲେ । ରାଣୀଙ୍କର 'ଦେବ' ଓ 'ରାମ' ନାମରେ ଦୁଇ ପୁଅ ଓ ତୁଳ୍‌ସା, ଦହନା ନାମରେ ଦୁଇଟି ବୋହୂ ଥିଲେ । ନୀଳାବତୀଙ୍କର ଝିଅଟିଏ ନଥିବାରୁ ସେ ବହୁ ଦେବାଦେବୀ ପୂଜା କରି ଝିଅଟିଏ ପାଇଲେ । ତାର ନାମ ଥିଲା 'ରଇଲାବତୀ' ।

ରାଜକୁମାରୀ ରଇଲାବତୀ ଡାଲଖାଇ ଓଷାକରିବାକୁ ଇଚ୍ଛାକଲା, କିନ୍ତୁ ବାପା, ମାଆ, ଭାଇ, ଭାଉଜ ସମସ୍ତେ ବାରଣ କରିବାରୁ ସେ ମନଦୁଃଖରେ 'ନିତାଇଧୋବଣୀ' ଘାଟରେ ଝାସଦେଲା । ରାଜାରାଣୀ ବହୁତ ଖୋଜାଖୋଜି କଲାପରେ ନିତାଇଧୋବଣୀ ଘାଟ ଜଳରେ ଝିଅକୁ ଭାସୁଥିବାର ଦେଖିଲେ ଏବଂ ବହୁତ କନ୍ଦାକନ୍ଦି କରି ରହିଲେ । ତା ପରଦିନ ସମସ୍ତେ ଦେଖିଲେ ରଇଲାବତୀ ନିତାଇଧୋବଣୀ ତୁଠାରେ ସପ୍ତମାତୃକା ବା ସାତ ଭଉଣୀଙ୍କ ସାଙ୍ଗରେ ଜଳକ୍ରୀଡା କରୁଛି । ରାଜାରାଣୀ ସାତଭଉଣୀଙ୍କୁ ପ୍ରାର୍ଥନା କରିବାରୁ ସେମାନେ ଗୋଟିଏ ସର୍ତ୍ତରେ ଛାଡିଦେବା ପାଇଁ ରାଜି ହେଲେ । ତାହା ହେଲା 'ଡାଲଖାଇ ଓଷା'' କରିବା ପାଇଁ ସର୍ତ୍ତ । ରାଜା ଏବଂ ରାଣୀ ସେ ସର୍ତ୍ତ ମାନିନେଲେ ଓ ରଇଲାବତୀକୁ ଫେରି ପାଇଲେ । ସେହିଦିନ ଠାରୁ 'ରଇଲାବତୀ' ଡାଲଖାଇ ଓଷା ଆରମ୍ଭ କଲା ।

ରଇଲାବତୀର ଡାଲଖାଇ ନୃତ୍ୟ ବିଷୟରେ ବିସ୍ତୃତ ବିବରଣୀ ଲେଖକ ଓ ଗବେଷକ ଭାଗୀରଥି ନେପାକ 'ଓଡ଼ିଶାର ଲୋକ ନୃତ୍ୟ ଡାଲଖାଇ' ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ଡାଲଖାଇ ନାଚ ଏକ 'ଲୋକ ନୃତ୍ୟ' ବା 'ଗୋଷ୍ଠୀ ନୃତ୍ୟ' । ଏହାର ଗୀତ ଲୋକଗୀତ ପର୍ଯ୍ୟାୟଭୁକ୍ତ । ଏଥିରେ ଅନେକ ଝିଅ ଏକସଙ୍ଗରେ ଗୀତ ଗାଇଥାନ୍ତି ଓ ନୃତ୍ୟ କରିଥାନ୍ତି । ନାଚରେ ଢୋ଼ଲ, ନିଶାନ, ତାସା, ମହୁରୀ ନ ବାଜିଲେ ଡାଲଖାଇ ମନୋମୁଗ୍ଧକର ହୁଏ ନାହିଁ । ଢୋ଼ଲ ଏହି ନାଚର ପ୍ରଧାନ ବାଦ୍ୟ । ଡାଲଖାଇ ଗୀତର କିଛି ଅଂଶ ନମ୍ନରେ ଦିଆଗଲା:-

''ଡାଲ ଖାଇରେ
ଅରଖ ପତର, ବେଲ, ଦୁଦୁରା

◆ *ଓଡ଼ିଶାର ଲୋକନୃତ୍ୟ ''ଡାଲ୍‌ଖାଇ'' - ଭାଗୀରଥି ନେପାକ*

ଫୁଲଫୁଟି ଅଛି ଚାରି ପାଖୁଡା
ତିନି ପାଖୁଡାର ଗଳାର ହାର
କେମନ୍ତ ପାଇବି ଈଶ୍ୱର ବର
ଈଶ୍ୱର ବରକେ ମହା ଜଂଜାଳ
କୁଠି ଲେଖୁଥିଲେ ପାର..କାଏଁ....ଡାଲଖାଇରେ ।''
''ପଲସା ଗଛର ଫୁଲ
ଦିହେ ମୋର ଅଛେ ଗା..ଯୌବନ ଭାର
ଦଦାକେ କହିଲି ଗା ବହୂକେ କହିଲି
ଖୁଜିଆନ ବର...କାଏଁ.....ଡାଲଖାଇ ବୋ ।''

ଡାଲଖାଇ ବିଷୟରେ ଲେଖକ କୁମାର ହସନ୍ ତାଙ୍କ ପୁସ୍ତକ ସମ୍ବଲପୁରୀ 'ଲୋକ ସାହିତ୍ୟ' ରେ ରାଧାକୃଷ୍ଣ ଲୀଳା ବର୍ଣ୍ଣନା କରିଛନ୍ତି ।

''ଡାଲଖାଇ ବୋ - ଡାଲଖାଇ ବୋ...
କୃଷ୍ଣ ଯାଇଥିଲେ ଯମୁନା କୂଳ
ରାଧା ଯାଇଥିଲେ ଆନିବେଜଲ
ଧରି ନେଲେ ହାତ କଲାକହ୍ନାଇ
ଛାଡ ବୋଇଲେ ସେ ଛାଡଇ ନାହିଁ
ଯୁବା ବୟସ ନନ୍ଦର ପିଲା
ଦେହତାର କଲା କଲା, ...ଡାଲଖାଇ ବୋ''

ଡାଲଖାଇରେ ସେ ଜଗନ୍ନାଥ ଧର୍ମ ବିଷୟରେ ଲେଖିଛନ୍ତି—

''ଡାଲଖାଇରେ....
ଆଗେ ବଳଭଦ୍ର ପଛେ ଭବାନୀ
ପଛେ ପଛେ ଲମିଥିବୁ ଦୂତୀମୋର, ଦୂତୀମୋର
ସାରଙ୍ଗ ପାଣିକି ଡାଲଖାଇରେ....''

ଡାଲଖାଇର ଅନ୍ୟାନ୍ୟ ଲେଖକଙ୍କ ମଧ୍ୟରେ ଗୋବିନ୍ଦପୁର ବାମରାର ଲକ୍ଷ୍ମଣ କୁମାର ଅନ୍ୟତମ । ଏହି 'ଡାଲଖାଇ' ପୁସ୍ତକରେ କେବଳ ଦୁଇଟି ଗୀତ ରହିଛି । ସେଥିରେ ସେ ଲେଖିଛନ୍ତି-

''ଡାଲଖାଇରେ....
ଆଦ୍ୟ ମାର୍ଗଶୀର ପଡେ ଶିଶିର
ଯୁବତୀ ଖୋଜଇ ଯୁବକକୋଳ
ମୋହର ଅଟଇ ମନ୍ଦ କପାଳ
କାହାକୁ ଧରିଣ କାଟେ ଜୀବନ କି ଡାଲଖାଇରେ (୧)

x x x x x

ବାରମାସୀ ଶେଷ ଏବେ ହୋଇଲା

ହୀନ ଲକ୍ଷ୍ମୀଧର ହସ୍ତ ଯୋଡିଲା

ଗୋବିନ୍ଦ ପୁରରେ ବାସ ତାହାର

ଧର୍ମ ଗ୍ରନ୍ଥରୁ କରେ କାରବାର କି ଡାଲଖାଇରେ । (୧୩)

ସମ୍ଭବିତଃ ଲକ୍ଷ୍ମୀଧର ଓ ଲକ୍ଷ୍ମଣ କୁମାର ଏକ ନୁହଁନ୍ତି । ଅନ୍ୟ ଏକ ଗୀତ ଲେଖି ଲକ୍ଷ୍ମଣକୁମାର ଲକ୍ଷ୍ମୀଧରଙ୍କର ଏ ଗୀତ ସହିତ ପୁସ୍ତକଟି ପ୍ରକାଶ କରିବାକୁ ଦେଇଛନ୍ତି ।

ଡାଲଖାଇର ଅନ୍ୟଜଣେ ଲେଖକ ଗଙ୍ଗାଧର ମହାନନ୍ଦ ସମ୍ବଲପୁରୀ ଖାଣ୍ଟି ଡାଲଖାଇ ଗୀତ ରଚନା କରିଛନ୍ତି । ସେଥିରେ ସେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ପ୍ରତି ଅକ୍ଷରରେ ପଦଲେଖି ପ୍ରକାଶ କରିଛନ୍ତି ।

''କ୍ଷମା କର ଦୋଷ ହେ ସାଧୁଜନ, କ୍ଷମିବ କହେ ହେ ଗଙ୍ଗା ମହାନନ୍ଦ

କ୍ଷୁଦ୍ର ବୁଦ୍ଧି ମୋର ହେ ସାଧୁନରେ

କ୍ଷମତ ଶରଣ ପଶୁଛି (ରାଧା) କୃଷ୍ଣ ପୟରେ

କ୍ଷମିବ ଥରେ, ଦୋଷ ମୋ' ଥିଲେକି ଡାଲଖାଇରେ...'' (୩୪)

ନାଚୁଣୀ:-

ରେଢ଼ାଖୋଲର ନାଚୁଣୀ ଏକ ବିଶେଷ ଆକର୍ଷଣ । ଏହା ଦଣ୍ଡନାଚର ଅଗ୍ନିଦଣ୍ଡ ପରେ ଯେଉଁ ସୁଆଙ୍ଗ ବା ନାଟକ ହୁଏ, ତାର ଏକ ଅଂଶବିଶେଷ । ଏହି ନାଚ ବିବାହ ସମୟରେ ଯେଉଁ ଶୋଭାଯାତ୍ରା ବାହାରେ ତାର ଆଗେ ଆଗେ ଚାଲିଥାନ୍ତି । ଏହି ନାଚରେ ଢ଼ୋଲ, ତାସା, ନିଶାନ, ଝାଞ୍ଜ, ଝୁମୁକୀ ବାଜିଥାଏ । ନାଚୁଣୀମାନେ ଆଗେ ଆଗେ ବିଭିନ୍ନ ଭଙ୍ଗୀରେ ନାଚିଥାଆନ୍ତି । ନାଚ ସମୟରେ ସଜନୀଗୀତ, ଜାଇଫୁଲ ପ୍ରଭୃତି ଗୀତ ଗାଇଥାନ୍ତି । ସଜନୀ ଗୀତର କିଛି ଅଂଶ ନିମ୍ନରେ ପ୍ରଦତ୍ତ ହେଲା-

''ଉଡିଯାଏ ପ୍ରଜାପତି,

ପର ଭାରିଜାରେ ଯେ କରେ ପ୍ରୀତି ଗୋ

'ଧନ' ଦେଖିଲେ ଫାଟଇ ଛାତି ସଜନୀରେ ।୧ ।

ବରଗଡର ବଜାର

କି କରିବି ଆଉ ଆମ ଗୁଜରରେ

ଧନ ବଲାଙ୍ଗିରି କଲାଘର ସଜନୀରେ ।୧୩ ।

X X X

ବୁଢ଼ା ପାଟି ଟାକୁ ଟାକୁ

ପାନ ଭାଙ୍ଗି ଦେବି ଯେ ଯାତରାକୁ ଗୋ

ଧନ ଯିବତ ହୁମାମେଳାକୁ ସଜନୀରେ । ୩୩ । ଇତ୍ୟାଦି

ରେଢ଼ାଖୋଲର ନାଚୁଣୀ ଯଦି କୌଣସି ବିବାହ ଶୋଭାଯାତ୍ରାରେ ଯାଇଛି କନ୍ୟାପକ୍ଷ ଗର୍ବରେ ଉଛୁଳି ପଡନ୍ତି । ପ୍ରତି ବର୍ଷ ସମ୍ବଲପୁରର ଶୀତଳ ଷଷ୍ଠୀ ଯାତ୍ରାର ଶିବ ପାର୍ବତୀଙ୍କ ବିବାହ ଉତ୍ସବରେ ରେଢ଼ାଖୋଲର ''ନାଚୁଣୀ'' ଏକ ବିଶେଷ ଆକର୍ଷଣ । ବାଲୁଙ୍କେଶ୍ୱର ଶିବଙ୍କ ଆଗେ ଆଗେ ଏହି ନାଚୁଣୀ ଦଳର ବାଜା ନାଚ ଓ ଗୀତ ଆକାଶବାଣୀ କେନ୍ଦ୍ରର ପ୍ରତ୍ୟକ୍ଷଦର୍ଶୀ ଧାରା ବିବରଣୀରେ ବାରମ୍ବାର ପ୍ରସାରିତ ହୁଏ ।

ସଂକୀର୍ତ୍ତନ ଓ ପାଲା:-

ରେଢ଼ାଖୋଲରେ ପ୍ରତି ଗ୍ରାମରେ ଫାଲଗୁନ ଠାରୁ ବୈଶାଖ ପୂର୍ଣ୍ଣମୀ ପର୍ଯ୍ୟନ୍ତ ସଂକୀର୍ତ୍ତନ କରାଯାଏ । ପୂର୍ବକାଳରେ ଏହା ଯଜ୍ଞର ଏକ ବିଶେଷ ରୂପ ଥିଲା । ଏଥିରେ ହୋମ ହୋଇ ସଂକୀର୍ତ୍ତନ ଆରମ୍ଭ ହେଉଥିଲା । ଅଷ୍ଟପ୍ରହରୀ, ଷୋଳ ପ୍ରହରୀ, ଚବିଶ ପ୍ରହରୀ ନାମ ଯଜ୍ଞ କରାହୁଏ । ବିଭିନ୍ନ ଗ୍ରାମରୁ ସଂକୀର୍ତ୍ତନ ମଣ୍ଡଳୀକୁ ନିମନ୍ତ୍ରଣ କରି ଅଣାଇଥାନ୍ତି । ମୃଦଙ୍ଗ (ଖୋଳ), ଝାଞ୍ଜ, କୁବୁଜି ବଜାଇ ''ହରେକୃଷ୍ଣ ହରେ ରାମ''.... ବୋଲି ସଂକୀର୍ତ୍ତନ କରିଥାନ୍ତି ।

ପାଲାରେ ମୃଦଙ୍ଗ ଓ ଝାଞ୍ଜ ବଜାଇ ଜଣେ ଗାହାଣ (ପାଲା ଗାୟକ) ଜଣେ ଶିରିପାଳିଆ, ଦୁଇଜଣ ବା ତିନିଜଣ ପାଳିଆ ଏପରି ଚାରି, ପାଞ୍ଚ ଜଣ ମିଶି ପାଲା ଦଳ ସୃଷ୍ଟି ହୋଇଥାଏ । ବର୍ତ୍ତମାନ ମଧ୍ୟ ରେଢ଼ାଖୋଲ ସବ୍‌ଡିଭିଜନରେ ତିନିଦଳ ପାଲା ଗାୟକ ପାଲା ପରିବେଷଣ କରୁଛନ୍ତି ।



## ଅଷ୍ଟମ ପରିଚ୍ଛେଦ
# ରେଢ଼ାଖୋଲର ପର୍ବପର୍ବାଣି

ପଞ୍ଚଖଣ୍ଡା- ରେଢ଼ାଖୋଲ ପଞ୍ଚଖଣ୍ଡାର ଭୂଇଁ ରୂପେ ପରିଚିତ । ପାଣ୍ଡବମାନେ ଛାଡ଼ି ଯାଇଥିଲେ ପାଞ୍ଚୋଟି ଖଣ୍ଡା । ସେହି ସନ୍ନିକିତ ଖଣ୍ଡାଇ' 'ପଞ୍ଚଖଣ୍ଡା' ଦେବତା । ଏହି ଦେବତାଙ୍କର ପୀଢ଼ ଏ ଅଞ୍ଚଳରେ ସର୍ବତ୍ର ଦେଖାଯାଏ । ଏହି ପାଞ୍ଚଖଣ୍ଡାକୁ ପଞ୍ଚତନ୍ ମାତ୍ରା, ପଞ୍ଚ ଭୂତ, ପୁଣି ପଞ୍ଚ ଶକ୍ତି (ଧର୍ମ, ତେଜ, ଶକ୍ତି, ବୁଦ୍ଧି ଓ ସୌନ୍ଦର୍ଯ୍ୟ)ର ପ୍ରତୀକ ବୋଲି ଧରାଯାଇପାରେ । ପଞ୍ଚଖଣ୍ଡା ପୂଜା ପରେ ରେଢ଼ାଖୋଲର ଲୋକମାନେ 'ନୂଆ' ଖାଇଥାନ୍ତି । 'ପଞ୍ଚଖଣ୍ଡା' ଦେବତା ନୂଆଖାଇଲା ପରେ ଅନ୍ୟ ସମସ୍ତେ ନୂଆ ଖାଇଥାନ୍ତି ।

ନୂଆଖାଇ - ଭାଦ୍ର ମାସର ଶୁକ୍ଳ ପକ୍ଷରେ ନବାନ୍ନ ଭକ୍ଷଣ ବା ନୂଆଖାଇ ପର୍ବ ପାଳିଥାନ୍ତି । ପରିବାରର ଯେ ଯେଉଁଠାରେ ଥିବେ ସମସ୍ତେ ନୂଆଖାଇକୁ ଘରକୁ ଆସନ୍ତି । ରେଢ଼ାଖୋଲର ରାଜ ପରିବାର ପ୍ରଥମେ 'ପଞ୍ଚଖଣ୍ଡା' ପୂଜା କଲାପରେ ନବାନ୍ନ ଭକ୍ଷଣ କରିଥାନ୍ତି । ତାପରେ ଗ୍ରାମର ସମସ୍ତେ ଏକ ଶୁଭ ଲଗ୍ନ ଅନୁସାରେ ନବାନ୍ନଭକ୍ଷଣ କରନ୍ତି । ପ୍ରତିଘରେ ନୂଆ ଚାଉଳରେ ଅନ୍ନବ୍ୟଞ୍ଜନ ପ୍ରସ୍ତୁତ କରି ପିତୃ ପୁରୁଷ ଓ କୁଳ ଦେବତାଙ୍କୁ ଭୋଗ ଲଗାନ୍ତି । ତାପରେ ପରିବାରର ସମସ୍ତେ ଏକାଠି ବସି ନୂଆ ଖାଇଥାନ୍ତି । ନବାନ୍ନ ଭକ୍ଷଣ ପରେ ସାନବଡ଼ କ୍ରମରେ ଚରଣଧୂଳି ଗ୍ରହଣ କରନ୍ତି । ଗ୍ରାମର ମାନ୍ୟଜନମାନଙ୍କୁ ଭେଟି ଜୁହାର ହୁଅନ୍ତି । ଦିନଟିକୁ ନାନା ପ୍ରକାରର ଆମୋଦ ପ୍ରମୋଦରେ କଟାଇଥାଆନ୍ତି ।

ରଥଯାତ୍ରା- ଆଷାଢ଼ ମାସର ଶୁକ୍ଳ ଦ୍ୱିତୀୟାରେ ରେଢ଼ାଖୋଲରେ ଗୋଟିଏ ବଡ ରଥରରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ଅନ୍ୟ ଏକ ଛୋଟ ରଥରେ ଦୁଇମୂର୍ତ୍ତି ଦଧିବାମନଙ୍କର ଶ୍ରୀ ଗୁଣ୍ଡିଚା ଯାତ୍ରା ଆରମ୍ଭ ହୁଏ । ଏହି ଯାତ୍ରା ପୁରୀର ରଥଯାତ୍ରାର ଅନୁରୂପ ହୋଇଥାଏ । ଏହା ରେଢ଼ାଖୋଲର ଏକ ବିଶିଷ୍ଟ ପର୍ବ । ଏହିଦିନ ସମସ୍ତେ ନୂତନ ବସ୍ତ୍ର ପରିଧାନ କରି ରଥଯାତ୍ରାରେ ଯୋଗଦେଇଥାନ୍ତି । ଘରର ସମସ୍ତ ଲୋକ ଯିଏ ଯେଉଁଠାରେ ଥିଲେ ମଧ ଆସିଥାନ୍ତି । ଏହା ଚଷାଜାତି ଲୋକମାନଙ୍କର ଏକ ପ୍ରଧାନ ପର୍ବ । ସେଦିନ ସେମାନେ ପୂଜା କରି ସେମାନଙ୍କର କୁଳଦେବତାଙ୍କୁ ଭୋଗ ଲଗାଇଥାନ୍ତି ।

ରେଢ଼ାଖୋଲରେ ଢେଙ୍କାନାଳର ଭୁବନ, କଣ୍ଟିଲୋ ଓ ବୌଦ ପ୍ରଭୃତି ସ୍ଥାନରୁ ବିଭିନ୍ନ ପିତଳ ଦୋକାନ ଓ ଅନ୍ୟାନ୍ୟ ମନୋହରି ଦୋକାନମାନ, ବିଭିନ୍ନ ପ୍ରକାରର ଦୋଳି, ଚିଡ଼ିଆଖାନା, ଘୋଡାଦୋଳି ପ୍ରଭୃତି ଆସି ୧୧ ଦିନ ପର୍ଯ୍ୟନ୍ତ ମେଳା ହୋଇଥାଏ । ମେଳାରେ ବିଶେଷତଃ ପିତଳ ଓ ସିଲଭର୍ ବାସନ ପ୍ରଭୃତି ଲକ୍ଷାଧିକ ଟଙ୍କାର ବିକ୍ରି ହୋଇଥାଏ । ଦଶମୀ ଦିନ ଦୁଇରଥ ଗୁଣ୍ଡିଚା ମନ୍ଦିର ଠାରୁ ବାହୁଡ଼ି ଆସନ୍ତି । ଏହାକୁ ବାହୁଡା ଯାତ୍ରା କହନ୍ତି । ରଥଟଣା ୨ଦିନ ଦଶମୀ ଓ ଏକାଦଶୀଦିନ ହୋଇଥାଏ । ଠାକୁର ରଥ ଉପରେ ଏକାଦଶୀ କରନ୍ତି ଏବଂ ଦ୍ୱାଦଶୀଦିନ ପହଣ୍ଡି ହୋଇ ମନ୍ଦିରରେ ପ୍ରବେଶ କରନ୍ତି ।

ଅନ୍ୟାନ୍ୟ ପର୍ବ -

ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟାଦିନ ''ଅକ୍ଷୟ ତୃତୀୟା'' ପାଳନ କରାଯାଏ । କୃଷିଜୀବୀମାନଙ୍କର ଏହା ଏକ ପ୍ରଧାନ ପର୍ବ । ସେଦିନ କୃଷକମାନେ ସକାଳୁ ସ୍ନାନ କରି, ନୂତନ ବସ୍ତ୍ର ପରିଧାନ କରି ଖେତକୁ 'ଅକ୍ଷିମୁଠି' ନେଇଥାନ୍ତି । ଏହାକୁ ମୁଠି ଛୁଆଁ ମଧ କହନ୍ତି । ଏହି ଅକ୍ଷିମୁଠିରେ ଗୋଟିଏ ଡାଲାରେ ନୂତନ ଧାନ ଓ ଅନ୍ୟାନ୍ୟ ପୂଜା ସାମଗ୍ରୀ ନେଇ ଖେତର ଏକ କୋଣରେ ନୂତନ ଧାନ ବୁଣି ପାଣି ଦେଇ ପୂଜା କରନ୍ତି । ଏହିଦିନ ଠାରୁ ଆଗାମୀ କୃଷି ବର୍ଷର ଶୁଭାରମ୍ଭ ହୁଏ । ସେହିଦିନ ପୁରୀ ରଥ ନିର୍ମାଣର ଶୁଭାରମ୍ଭ ହୋଇଥାଏ ।

ଜ୍ୟେଷ୍ଠ ମାସ ଅମାବାସ୍ୟା ଦିନ ସଧବା ସ୍ତ୍ରୀମାନେ ପତିମାନଙ୍କର ଦୀର୍ଘାୟୁ କାମନା କରି ଉପବାସ କରି ସାବିତ୍ରୀ ବ୍ରତ ପାଳନ କରି ପୂଜା କରିଥାନ୍ତି । ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀଦିନ ସମ୍ବଲପୁର ଠାରେ ଶୀତଳ ଷଷ୍ଠୀ ପାଳିତ ହୁଏ । ରେଢ଼ାଖୋଲର ଲୋକମାନେ ଶିବ, ପାର୍ବତୀଙ୍କ ବିବାହ ଶୋଭାଯାତ୍ରାରେ ଭାଗ ନେଇଥାନ୍ତି । ଶ୍ରାବଣ ପୂର୍ଣ୍ଣିମା ଦିନ ରାକ୍ଷୀ ବନ୍ଧନ ଉତ୍ସବ ମଧ ପାଳନ କରାଯାଏ । ଏହି ଉତ୍ସବରେ ବଳଭଦ୍ରଙ୍କର ଏବଂ ଗୋରୁଙ୍କର ପୂଜା ହୁଏ ।

ଭାଦ୍ର କୃଷ୍ଣ ଅଷ୍ଟମୀଦିନ ଜନ୍ମାଷ୍ଟମୀ ପାଳନ କରାଯାଏ । ରେଢ଼ାଖୋଲ ରାଜନଗରସ୍ଥିତ ରାଧାକୃଷ୍ଣ ମନ୍ଦିରରେ ଏବଂ ନୂତନ ହୋଇ ନିର୍ମିତ ହେଉଥିବା କଳିନ୍ଦର ଓ ଖନ୍ଦାଢ଼ିପସ୍ଥିତ ରାଧାକୃଷ୍ଣ ମନ୍ଦିରରେ ଶ୍ରୀ କୃଷ୍ଣଙ୍କ ଜନ୍ମୋତ୍ସବ ପାଳିତ ହୁଏ । ଭାଦ୍ରବ ଶୁକ୍ଳ ଚତୁର୍ଥୀ ଦିନ ଗଣେଶ ଚତୁର୍ଥୀ ପାଳିତ ହୁଏ । ଗଣେଶ ଚତୁର୍ଥୀ ପରେ 'ନବାନ୍ନ ଭକ୍ଷଣ' ଉତ୍ସବ ଅନୁଷ୍ଠିତ ହୁଏ । ଭାଦ୍ର ଶୁକ୍ଳ ଏକାଦଶୀରେ ଆଦିବାସୀମାନେ କରମାସାଇଙ୍କର ପୂଜା କରିଥାନ୍ତି । ଏହିଦିନ ବଡ଼ ଏକାଦଶୀ ।

ଆଶ୍ୱିନ କୃଷ୍ଣ ପକ୍ଷରେ ବ୍ରାହ୍ମଣମାନେ ପିତୃପକ୍ଷ ପଳନ କରନ୍ତି । ପ୍ରତି ଘରେ ପିତୃତର୍ପଣ ଓ ଶ୍ରାଦ୍ଧ ଅନୁଷ୍ଠିତ ହୁଏ । କୃଷ୍ଣ ପକ୍ଷ ଅଷ୍ଟମୀଦିନ ଜୀମୂତବାହାନ ଓଷା ବା ପୁଅ ଜାଉଁତିଆ ଉପବାସ କରିଥାନ୍ତି । ଆଶ୍ୱିନ ଶୁକ୍ଳ ଅଷ୍ଟମୀକୁ ଦୁର୍ଗାଷ୍ଟମୀ କୁହାଯାଏ । ବୁରୁଡା ମାହେଶ୍ୱରୀଙ୍କ ଠାରେ ବିଶେଷ ପୂଜା ଅନୁଷ୍ଠିତ ହୁଏ । ରେଢ଼ାଖୋଲ କୁଞ୍ଜାମୁରା, ଖୋଲଗଡ ଠାରେ ମଧ ଦୁର୍ଗାଙ୍କର ପୂଜା ମହାସମାରୋହରେ ପାଳିତ ହୁଏ । ରେଢ଼ାଖୋଲଠାରେ ମୃଣ୍ମୟ ମୂର୍ତ୍ତିର ବିଶେଷ ସାଜସଜ୍ଜା ହୋଇ ତିନିଦିନ ଧରି ମହାଆଡମ୍ବରରେ ଉତ୍ସବପାଳିତ ହୋଇଥାଏ । ଶେଷରେ ଶୋଭାଯାତ୍ରାରେ ପଟୁଆର ମଧ୍ୟରେ ଦୁର୍ଗାମୂର୍ତ୍ତିର ଭସାଣି ହୁଏ । ଦୁର୍ଗାଷ୍ଟମୀ ଦିନ ଝିଅମାନେ 'ଭାଇଜିଉନ୍ତିଆ' ବ୍ରତ ପାଳନ କରି ଭାଇମାନଙ୍କର ଦୀର୍ଘ ଜୀବନ କାମନା କରିଥାନ୍ତି । ଆଦିବାସୀ ସମ୍ପ୍ରଦାୟର ଲୋକମାନେ ଏହିଦିନ 'ଡାଲଖାଇ' ନାଚ କରିଥାନ୍ତି । ବୁରୁଡାର ମାହେଶ୍ୱରୀଙ୍କ ଠାରେ ଏହି ନାଚର ପ୍ରଚଳନ ଅଛି । ଆଶ୍ୱିନ

ମାସର ପ୍ରତି ମଙ୍ଗଳବାର ଦିନ ମଙ୍ଗଳାଙ୍କ ପୂଜା କେହି କେହି କରିଥାନ୍ତି । ଆଶ୍ୱିନ ପୂର୍ଣ୍ଣିମା ଦିନ କୁମାରୀ ଝିଅମାନେ କୁମାର ପୂର୍ଣ୍ଣିମା ପାଳନ କରି ଚନ୍ଦ୍ରଦେବଙ୍କ ପୂଜା କରିଥାଆନ୍ତି ।

କାର୍ତ୍ତିକ ମାସଟି ଅତି ପବିତ୍ର ମାସ ହୋଇଥିବାରୁ ଲୋକମାନେ ପ୍ରାତଃସ୍ନାନ, ଦେବପୂଜା, କୀର୍ତ୍ତନ ପୁଣ୍ୟ ଗ୍ରନ୍ଥ ଶ୍ରବଣ ଇତ୍ୟାଦି କରନ୍ତି । ଅମାବାସ୍ୟା ଦିନ ଦୀପାବଳୀ ଉତ୍ସବ ପାଳିତ ହୁଏ । ଖନ୍ଦାଡ଼ିପ କଳିନ୍ଦରସ୍ଥିତ ଶ୍ରୀ ଶ୍ରୀ ରାଧାକୃଷ୍ଣ ମନ୍ଦିରରେ ପାଞ୍ଚଦିନ ବ୍ୟାପୀ ଶରଦରାସୋତ୍ସବ ମହାସମାରୋହରେ ପାଳନ କରାଯାଏ । ପୂଜାପାଠ, ସଙ୍କୀର୍ତ୍ତନ ବ୍ୟତୀତ ରାତ୍ରିରେ ପାଲା, ଦାସକାଠିଆ, ସଙ୍ଗୀତ ସମାରୋହ ପରି ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ସ୍ଥାନୀୟ ଶ୍ରୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ ସଂସଦ ଆନୁକୂଲ୍ୟରେ ପ୍ରବଚନ, ଆଧାତ୍ମିକ ଚେତନା ମୂଳକ ସାରଗର୍ଭକ ଭାଷଣର ଆୟୋଜନ କରାଯାଇଥାଏ । ରେଢ଼ାଖୋଲର ଚନ୍ଦ୍ରଶେଖର ଶିବ, ଖୋଲଗଡର ନୀଳକଣ୍ଠେଶ୍ୱର ଶିବ, ଖୁବେଲ (ଚାରମାଲ)ର କପିଳେଶ୍ୱର ଶିବ, କୁଞ୍ଜାମୁରାର ଶିବ, ଉପରମୁଣ୍ଡାର ଷିବ, ନାକଟିଦେଉଳର କନକେଶ୍ୱର ଶିବ, କଞ୍ଚନପୁରର ଶିବ, ବାଙ୍କାଗଡର ଶିବ, ଡଙ୍ଗିଟା ରାମେଶ୍ୱର ଶିବ, କଦଳୀ ଗଡ ଶିବ ମନ୍ଦିରମାନଙ୍କରେ କାର୍ତ୍ତିକ ପୂର୍ଣ୍ଣିମାଦିନ ବିଶେଷ ଯାତ୍ରୀ ଭିଡ ହୋଇଥାଏ । ରାତ୍ରିରେ ବିଶେଷ ସାଜସଜ୍ଜା ସହ ଧର୍ମପୁସ୍ତକ ପାଠ ଓ କୀର୍ତ୍ତନ କରାଯାଏ । ପୂର୍ଣ୍ଣିମା ଆଗଦିନ ପାହାନ୍ତିଆ ସମୟରୁ ସ୍ଥାନୀୟଲୋକେ ପୁଷ୍କରିଣୀ ଓ ନାଳ ମାନଙ୍କରେ ବୋଇତ ଭସାଣ ଉତ୍ସବ ପାଳନ କରିଥାନ୍ତି । ମାର୍ଗଶୀର ମାସ ପ୍ରତି ଗୁରୁବାରରେ ଲକ୍ଷ୍ମୀ ପୂଜା ବା ଧାନ ମାଣିକିଆ ଓଷା ହୁଏ ।

ଏହି ସ୍ଥାନରେ ପୌଷ ପୂର୍ଣ୍ଣିମାଦିନ ବିଶେଷ ମହୋତ୍ସବ ପାଳନ କରାଯାଏ । ସମ୍ବଲପୁରର ''ପୁଷ ପୁନେଇଁ'', ''ଛେରଛେରା'' ର ଏହି ଅଞ୍ଚଳରେ ବିଶେଷ ପ୍ରଭାବ ନାହିଁ । ଫାଲ୍‌ଗୁନ ପୂର୍ଣ୍ଣିମାଦିନ ଫଗୁଖେଳ ବା ଦୋଳଯାତ୍ରା ଅନୁଷ୍ଠିତ ହୁଏ । ଶ୍ରୀ ଶ୍ରୀ ରାଧାକୃଷ୍ଣ ମନ୍ଦିରରେ ବିଶେଷ ପୂଜା ଏହି ଉପଲକ୍ଷେ ହୋଇଥାଏ । ରାଧାକୃଷ୍ଣ ବିମାନରେ ବସି ଶୋଭାଯାତ୍ରାରେ ନଗର ପରିକ୍ରମା କରିଥାନ୍ତି । ପୂଜା ଶେଷରେ ଠାକୁରଙ୍କ ନିକଟରେ ନୂତନ ପାଞ୍ଜି ପଢ଼ା ହୁଏ ।

ଚୈତ୍ର ମାସର ପ୍ରତି ମଙ୍ଗଳବାର ଦିନ ଏହି ଅଞ୍ଚଳରେ ମଙ୍ଗଳା ଓଷା ପାଳିତ ହୁଏ । ଏହିପରି ବାରମାସରେ ତେର ପର୍ବ ରେଢ଼ାଖୋଲ ଅଞ୍ଚଳରେ ପାଳିତ ହୋଇଥାଏ ।



## ନବମ ପରିଚ୍ଛେଦ

# ରେଢ଼ାଖୋଲ ରାଜ୍ୟର ଧର୍ମାନୁଷ୍ଠାନ

ଉତ୍କଳଭୂମି ପ୍ରାଚୀନ କାଳରୁ ନାନାଧର୍ମ ଓ ସଂସ୍କୃତିର ସଙ୍ଗମସ୍ଥଳ । ରେଢ଼ାଖୋଲ ଉପରେ ମଧ୍ୟ ବିଭିନ୍ନ ସମୟରେ ବିଭିନ୍ନ ଧର୍ମଧାରାର ପ୍ରଭାବ, ତାର ପ୍ରାଚୀନ ଓ ନୂତନ ସ୍ଥାପତ୍ୟର ନିଦର୍ଶନରୁ ପ୍ରତିପାଦିତ ହୁଏ । ରେଢ଼ାଖୋଲର ବିଭିନ୍ନ ସ୍ଥାନରେ ଶିବ, ଶକ୍ତି, ବିଷ୍ଣୁ ଏବଂ ଅନ୍ୟାନ୍ୟ ଦେବତା ଭିନ୍ନ ଭିନ୍ନ ମନ୍ଦିରରେ ପୂଜା ପାଇ ଆସୁଛନ୍ତି । ରେଢ଼ାଖୋଲରେ ଆର୍ଯ୍ୟବସତିର ସ୍ଥାପନ ଓ ବିସ୍ତାର ସଙ୍ଗେ ସଙ୍ଗେ ବ୍ରାହ୍ମଣ୍ୟ ଧର୍ମର ପ୍ରସାର ଆରମ୍ଭ ହୋଇଥିଲା । ଏହି ଧର୍ମର ପ୍ରତିଷ୍ଠା ଓ ପ୍ରଭାବ ବଳରେ ଆଦିମ ଅଧିବାସୀମାନେ ସେହି ଧର୍ମରେ ଦୀକ୍ଷିତ ହୋଇଥିଲେ । ବର୍ତ୍ତମାନ ଆଦିବାସୀ ସମ୍ପ୍ରଦାୟର ଲୋକମାନେ କହୁଛନ୍ତି ‘‘ଆମେ ଚଷାମାନଙ୍କ ସଙ୍ଗେ ତାଙ୍କର ପର୍ବ ପାଳୁଛୁ । ଆମର କରମା ଓ ଡାଲଖାଇ ପ୍ରଭୃତି ଧୀରେ ଧୀରେ ଭୁଲିଗଲୁଣି ।’’

ପୂର୍ବରୁ ରେଢ଼ାଖୋଲର ପ୍ରନ୍ତତତ୍ତ୍ୱ ପରିଚ୍ଛେଦରେ କୁଞ୍ଜାମରାର ବିଶ୍ୱେଶ୍ୱର ଶିବ ମନ୍ଦିର ଏବଂ ପଣ୍ଡୁଆ -(ଯୋରା ପାଲି)ର ଝଡେଶ୍ୱର ଶିବଙ୍କ ମନ୍ଦିର ବିଷୟରେ ବିସ୍ତୃତ ଆଲୋଚନା ହୋଇସାରିଛି । ବଂଶାଜାଲର ସୁହାଣୀ ଓ ପ୍ରାଚୀନ ଗୁମ୍ଫା ସମୂହର ଆଲୋଚନା ହୋଇଛି । ରେଢ଼ାଖୋଲ ରାଜାଙ୍କ ସମୟର କେତେକ ମନ୍ଦିର ଆଲୋଚିତ ହୋଇପାରିନାହିଁ । ସେହି ବିଷୟରେ ସମ୍ୟକ୍ ଆଲୋକପାତ କରାଯିବା ବାଞ୍ଛନୀୟ ।

କୁଞ୍ଜମରା ଝୁନ୍ତୁରୁଗଡର ମନ୍ଦିର ଓ ଦେବଦେବୀ

ପୁରାତନ ଝୁନ୍ତୁରୁଗଡ ନିକଟରେ ଏକ ଖପରଘରେ ରାଜବଂଶର କୁଳଦେବୀ ମାହେଶ୍ୱରୀ ପ୍ରତିଷ୍ଠିତ । ମାହେଶ୍ୱରୀ ପ୍ରତ୍ୟକ୍ଷ ଦେବୀ । ଆଜି ପର୍ଯ୍ୟନ୍ତ ପ୍ରତିବର୍ଷ ଆଶ୍ୱିନ ମାସରେ ବଳି ପଡ଼ିବା ବିଧି ଅଛି । ମାହେଶ୍ୱରୀଙ୍କୁ କେହି କେହି ରଣଘଣ୍ଟା ମାହେଶ୍ୱରୀ କହନ୍ତି । ମାହେଶ୍ୱରୀ ମୂର୍ତ୍ତିଙ୍କ ପଛପଟେ ଏକ ଲୁହା ଶିକୁଳିରେ ବନ୍ଧା ହୋଇ ଏକ ପଥର ରହିଥାଏ । ଏହି ପଥର ସମୟ ସମୟରେ ରହିଥିବା ସ୍ଥାନରୁ ଉପରକୁ ଉଠି ଉଠି ଆସୁଥିବା ଲୋକମାନେ କହନ୍ତି । କିନ୍ତୁ ଲେଖକ ଦେଖିଲାବେଳେ ତାହା ଉଇ (ଡିଆଁ)ଙ୍କର ହୁଙ୍କା (ବିଣ୍ଡିଆ) ଥିଲା । ସେଥିପାଇଁ ସାମୟିକ ସ୍ଥାନ ପରିବର୍ତ୍ତନ ପରି ଜଣାପଡେ । ମାହେଶ୍ୱରୀ ମୂର୍ତ୍ତି କଡକୁ ଅନ୍ୟ ଏକ ଛୋଟ ମୂର୍ତ୍ତି ଅବିକଳ ବଡ ମୂର୍ତ୍ତି ପରି ରହିଛି । ସେ ମୂର୍ତ୍ତିକୁ ସୂର୍ଯ୍ୟ ମାହେଶ୍ୱରୀ କୁହନ୍ତି ।

ଆଶ୍ୱିନ ମାସ ଶୁକ୍ଳ ପକ୍ଷ ଦଶହରା ସମୟରେ ନବରାତ୍ରି ପୂଜାରେ ଷୋଳପୂଜା ଅନୁଷ୍ଠିତ ହୁଏ । ମାହେଶ୍ୱରୀ ମନ୍ଦିରରେ ରଘୁନାଥ ଦେହୁରୀଙ୍କ ପୁତ୍ର ନବଘନ ଦେହୁରୀ (ଜାତି - ବଡ଼ସୁଦ) ପୂଜାରୀ କାର୍ଯ୍ୟ କରିଆସୁଛନ୍ତି । ସେଥିପାଇଁ ସେ ରାଜାଙ୍କ ଠାରୁ ଜାଗିରୀ ପାଇ ପୂଜା ଅର୍ଚ୍ଚନା କାର୍ଯ୍ୟ କରି ଆସୁଛନ୍ତି । ତାଙ୍କର ପୂର୍ବ ପୁରୁଷଙ୍କୁ ରାଜା ବଂଶାଜାଲରୁ ଏଥିପାଇଁ ଅଣାଇଥିଲେ ।

ମୂର୍ତ୍ତିଟି କାଳିକା ମୂର୍ତ୍ତି । ଚତୁର୍ଭୁଜା । ଦକ୍ଷହସ୍ତର ଉପରେ ପାନ ପାତ୍ର, ନିମ୍ନରେ କଟାମୁଣ୍ଡ ଏବଂ ବାମ ହସ୍ତ ଉପରେ ଖଡ୍‌ଗ, ନିମ୍ନରେ ତ୍ରିଶୂଳ ବା ମସାଲ । ଦକ୍ଷିଣ ପାଦ ଶବ ଉପରେ ମାଡ଼ିଛନ୍ତି ଏବଂ ବାମପାଦ ସିଂହ ଉପରେ ସ୍ଥାପିତ । ବେକରେ ୪୯ଗୋଟି ମୁଣ୍ଡର ମାଳ । ଆଜାନୁଲମ୍ବିତ ମୂର୍ତ୍ତିଙ୍କର ଡାହାଣ ପାର୍ଶ୍ୱରେ ସୂର୍ଯ୍ୟ ମାହେଶ୍ୱରୀ ଛୋଟ ମୂର୍ତ୍ତିଟି ରଖାଯାଇଛି । ମୂର୍ତ୍ତିଙ୍କର ପଛପଟରେ ଏକ ଉଚ୍ଚ ସ୍ତମ୍ଭପରି ପଥରଟି ରହି ପୂଜା ପାଉଛି ।

ଝନ୍ନୁରୁଗଡର ଟିକିରାନଦୀ କୂଳରେ ପଞ୍ଚଖଣ୍ଡା ପୂଜା ପାଉଛନ୍ତି । ସେଠାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପାଇଁ ଗୁଡ଼ିଘର ଥିଲା । ସେ ଗୁଡ଼ି ଘର ଭାଙ୍ଗିଯିବାରୁ ବର୍ତ୍ତମାନ କୁଞ୍ଜମରା ଗ୍ରାମ ମଧ୍ୟକୁ ଜଗନ୍ନାଥ ମୂର୍ତ୍ତି ଅଣାଯାଇଛି । ସେଠାରେ ପ୍ରତିବର୍ଷ ରଥଯାତ୍ରା ମହାସମାରୋହରେ ପାଳିତ ହୁଏ ।

## ରେଢ଼ାଖୋଲ ରାଜ୍ୟରେ ଶିବ ଉପାସନା

ଖୋଲଗଡ - ନୀଳକଣ୍ଠେଶ୍ୱର ଶିବ:-

ଖୋଲଗଡ ବିଷୟରେ ପୂର୍ବରୁ ଆଲୋଚନା କରାଯାଇଛି । ରେଢ଼ାଖୋଲର ରାଜା ନୀଳକଣ୍ଠ ଜେନାମଣି ତାଙ୍କ ରାଜଧାନୀ ଖୋଲଗଡର ଏକ ପର୍ବତ ଉପରୁ ରାମଖୋଲଠାରୁ ବହି ଆସୁଥିବା ଚିରସ୍ରୋତା ଝରଣାର ବାମକୂଳରେ ଏକ ମନ୍ଦିର ନିର୍ମାଣ କରାଇଥିଲେ । ସେହି ମନ୍ଦିର ଆଜିର ନୀଳକଣ୍ଠେଶ୍ୱର ମନ୍ଦିର । ମନ୍ଦିରଟି ସାଦାଶିଖର ଶୈଳୀରେ ନିର୍ମିତ ହେଲେ ମଧ୍ୟ ମନ୍ଦିରର ଉଚ୍ଚତା ପ୍ରାୟ ୧୨ ମିଟର । ମନ୍ଦିର ସମ୍ମୁଖ ଭାଗରେ ଲକ୍ଷ୍ମୀ ପଦ୍ମ ଉପରେ ଉପବିଷ୍ଟା । ଚତୁର୍ଭୁଜା ଲକ୍ଷ୍ମୀ ହସ୍ତରେ ଧାରଣ କରିଛନ୍ତି ପଦ୍ମ । ସ୍ଥାନୀୟ ଲୋକମାନେ ତାଙ୍କୁ କାଳରାତ୍ରି ବୋଲି କହନ୍ତି ।

ମନ୍ଦିରର ମୁଖଶାଳାଟି କାଠ, ବାଉଁଶ ଓ ଖପର ଦ୍ୱାରା ନିର୍ମିତ । ସେଠାରେ ଯେତେ ମୂର୍ତ୍ତି ଅଛି, ସେଥିରୁ ଅନୁମିତ ହୁଏ ସେଗୁଡ଼ିକ ପୂର୍ବେ ଝରଣାର ଦକ୍ଷିଣ ପାର୍ଶ୍ୱରେ ଥିବା ଗଡ ମଧ୍ୟରେ ଥିଲା । ରାଜଧାନୀ ପରିବର୍ତ୍ତନ ପରେ ସେହି ମୂର୍ତ୍ତିସବୁ ଏଠାକୁ ସ୍ଥାନାନ୍ତରିତ କରାଯାଇଛି । ମୂର୍ତ୍ତିମାନଙ୍କ ମଧ୍ୟରୁ ଦୁଇଟି ମୂର୍ତ୍ତି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ମୂର୍ତ୍ତି ଦୁଇଟି ମହାଦେବ ନୀଳକଣ୍ଠେଶ୍ୱରଙ୍କ ସମ୍ମୁଖରେ ବସିଛନ୍ତି । ଦକ୍ଷିଣ ଭାଗରେ ଥିବା ମୂର୍ତ୍ତିଟି ବିଷ୍ଣୁମୂର୍ତ୍ତି । ଚତୁର୍ଭୁଜା, ଦକ୍ଷ ଉପର ହସ୍ତରେ ପଦ୍ମ, ଦକ୍ଷ ନିମ୍ନ ହସ୍ତରେ ଶଙ୍ଖ, ବାମ ଉପର ହସ୍ତରେ ଗଦା, ବାମ ନିମ୍ନହସ୍ତରେ ମାଳା ସହ କନିଷ୍ଠ ଓ ଅନାମିକା ଅଙ୍ଗୁଷ୍ଠି ଦ୍ୱୟ ନିମ୍ନକୁ ଝୁଲିରହି ଦୁଇ ଜଣ ପୁରୁଷଙ୍କ ମସ୍ତକ ଉପରେ ଲାଗିଛି । ପୁରୁଷମାନେ ପଛପଟେ ଚାମର ଧରିଛନ୍ତି । ମୂର୍ତ୍ତିଟିର ଉପବୀତ ବା ମାଳ ଆଣ୍ଠୁ ଉପର ପର୍ଯ୍ୟନ୍ତ ଲମ୍ବିଛି । ବାମପାର୍ଶ୍ୱରେ ଥିବା ମୂର୍ତ୍ତିଟି ଚତୁର୍ଭୁଜା ଲକ୍ଷ୍ମୀ । ଦକ୍ଷ ଉପର ହସ୍ତ ଭଗ୍ନ । ଦକ୍ଷ ଓ ବାମ ନିମ୍ନ ହସ୍ତ ଦ୍ୱୟ

ଠିକ୍ ବିଷ୍ଣୁମୂର୍ତ୍ତି ପରି ଶଙ୍ଖ ଓ ମାଳା ଧାରଣ କରିଛନ୍ତି । କନିଷ୍ଠ ଓ ଅନାମିକା ଅଙ୍ଗୁଳି ଦ୍ୱୟ ବିଷ୍ଣୁମୂର୍ତ୍ତି ସଦୃଶ ଦୁଇ ପୁରୁଷ ମୂର୍ତ୍ତି ଉପରେ ଲାଗିଛି । ପୁରୁଷଙ୍କ ପଛପଟେ ଦୁଇଜଣ ସ୍ତ୍ରୀ ଚାମର ଧାରଣ କରି ଦଣ୍ଡାୟମାନା । ମସ୍ତକ ଉପରେ ମୁଷଳ ପରି ଟୋପି ରହିଛି ।

ଅନ୍ୟ ଦୁଇଟି ମୂର୍ତ୍ତି ମଧ୍ୟରୁ ଗୋଟିଏ ହେଲେ ଭୋଳେଶ୍ୱର ଶିବ ଏବଂ ଅନ୍ୟଟି ଭୈରବୀ ମୂର୍ତ୍ତି । ବାମରେ ଥିବା ଭୈରବୀ ମୂର୍ତ୍ତି ପଶ୍ଚିମ ଦିଗକୁ (ମନ୍ଦିରକୁ) ମୁହଁ କରି ଉପବିଷ୍ଟା । ମନ୍ଦିର ସମ୍ମୁଖରୁ ୧୫ ମିଟର ଦୂରରେ ଅନ୍ୟଏକ ଖପରଗୁଡ଼ିରେ ବିନ୍ଧ୍ୟବାସିନୀ ଦୁର୍ଗା ପୂଜା ପାଉଛନ୍ତି । ଏହି ମୂର୍ତ୍ତି ଉତ୍ତର ଦିଗକୁ ମୁହଁ କରିଅଛନ୍ତି । ନୀଳକଣ୍ଠେଶ୍ୱର ଶିବ ମନ୍ଦିରର ମାଳାକାର ପୂଜାରୀ ବିନ୍ଧ୍ୟବାସିନୀଙ୍କ ପୂଜା ଅର୍ଚ୍ଚନା କରନ୍ତି । ପୂର୍ବରୁ ମାଳୀରୁଦ୍ର ସେନାପତି ଓ ତାଙ୍କ ପୁଅ ବୈଷ୍ଣବ ସେନାପତି ପୂଜା କରୁଥିଲେ । କିନ୍ତୁ ବର୍ତ୍ତମାନ କୁଟାସିଙ୍ଗାରୁ ଆଗତ ତାଙ୍କର ଜ୍ୱାଇଁ ଲକ୍ଷ୍ମୀଧର ମହାପାତ୍ର ଏହି ପୂଜାଅର୍ଚ୍ଚନାର ଦାୟିତ୍ୱ ନେଇଛନ୍ତି ।

ଖୁବେଳ - କପିଳେଶ୍ୱର ଶିବଃ-

ଖୁବେଳ କପିଳେଶ୍ୱର ଶିବ ମନ୍ଦିର ବଛାଯୋରର ଦକ୍ଷିଣ କୂଳରେ ନିର୍ମିତ । ଏହି ସ୍ଥାନଟି ବୟାଳିଶ ନମ୍ବର ଜାତୀୟ ରାଜପଥ ଉପରେ ଥିବା ଚାରମାଳଠାରୁ ପଣ୍ଡକିମାଲବାଟେ ୩ କିଲୋମିଟର ଦୂର । ଏହା ମୁଖଶାଳା ସଂଯୁକ୍ତ ଏକ ଛୋଟ ମନ୍ଦିର । ଶିଖର ଶୈଳୀରେ ସ୍ଥାନୀୟ ଲୋକମାନଙ୍କ ଦ୍ୱାରା ବିଂଶ ଶତାବ୍ଦୀର ଅଶୀ ଦଶନ୍ଧିରେ ନିର୍ମିତ । ପୂର୍ବରୁ ଲିଙ୍ଗ ଏକ ଖପରଗୁଡ଼ିରେ ରହୁଥିଲେ । ମନ୍ଦିରର ଚତୁଃପାର୍ଶ୍ୱରେ ପ୍ରାଚୀର ବେଢ଼ା ରହିଛି । ବଛାଯୋର କଡକୁ ଭୋଷଶାଳା ନିର୍ମିତ ।

ଏଠାରେ ବହୁ ପୁରାତନ କାଳରୁ ଏକ ଡମକୁରୁଡୁ ଗଛ ଅଛି । ଏହି ଗଛମୂଳରେ ଅଛନ୍ତି ଖମ୍ବେଶ୍ୱରୀ । ଲୋକେ ତାଙ୍କୁ ପାଟ ମାହେଶ୍ୱରୀ ବା ଦକ୍ଷିଣକାଳୀ କହନ୍ତି । ନିକଟରେ ଥିବା ଅନ୍ୟ ଏକ ପ୍ରସ୍ତରକୁ ନରଘଣ୍ଟା କହିଥାନ୍ତି । ଦେବୀ ମନ୍ଦିରଟି ଖପରରେ ନିର୍ମିତ । ଡମକୁରୁଡୁ ଗଛଟି ବାହାରକୁ (ସମ୍ମୁଖକୁ) ଶୋଇ ରହିଛି । ଖୁବେଳଠାରେ ଶିବ ରାତ୍ରୀ ମହା ସମାରୋହରେ ପାଳିତ ହୁଏ । ଏହି ଶିବ ମନ୍ଦିରରୁ ମଧ୍ୟ ଚୈତ୍ର-ବୈଶାଖ ମାସରେ ଦଣ୍ଡ ବାହାରିଥାଏ । ଲୋକମାନେ ମାନସିକ ଅନୁସାରେ ଦେବୀ ଦର୍ଶନ କରିବାକୁ ଆସିଥାନ୍ତି ।

ରାମପୁର (ରେଢ଼ାଖୋଲ)ର ଚନ୍ଦ୍ର ଶେଖର ଶିବଃ-

ଚନ୍ଦ୍ରଶେଖର ଶିବ ମନ୍ଦିର ରେଢ଼ାଖୋଲ ମଧ୍ୟ ଦେଇ ବହି ଯାଇଥିବା କେରାଣ୍ଡି ଯୋରର ବାମ ପାର୍ଶ୍ୱରେ ଅବସ୍ଥିତ । ରେଢ଼ାଖୋଲର ରାଜା ଚନ୍ଦ୍ରଶେଖର ଜେନାମଣି ପ୍ରଥମେ ଚନ୍ଦ୍ରଶେଖର ଶିବଙ୍କୁ ପ୍ରତିଷ୍ଠା କରିଥିଲେ । ମନ୍ଦିରର ଉଚ୍ଚତା ପ୍ରାୟ ୧୪ ମିଟର । ସାଧାରଣ ଶିଖର ଶୈଳୀରେ ନିର୍ମିତ । ଦକ୍ଷିଣରେ ଗଣେଶ, ଉତ୍ତରରେ ଦୁର୍ଗା ବା ପାର୍ବତୀ, ପଶ୍ଚିମରେ କାର୍ତ୍ତିକେୟ ପାର୍ଶ୍ୱ ଦେବତା ରୂପେ ପ୍ରତିଷ୍ଠିତ । ମନ୍ଦିରଟି ମୁଖଶାଳା ସଂଯୁକ୍ତ ।

ବାମପାର୍ଶ୍ୱରେ ବିନ୍ଧ୍ୟବାସନୀ ଦୁର୍ଗାଙ୍କର ମନ୍ଦିର ବିଦ୍ୟମାନ। ଚନ୍ଦ୍ରଶେଖର ଶିବ ପୂର୍ବେ ଏକ ଡ଼ବାଗୁଡ଼ିରେ ରହୁଥିଲେ। ରେଢ଼ାଖୋଲର ରାଜା ବୀରଚନ୍ଦ୍ର ଯଦୁମଣି ଦେବ ଜେନାମଣିଙ୍କ ଦେଓ୍ୱାନ କେଶବ ଚନ୍ଦ୍ର ସାମଲ ୧୯୩୦-୩୧ ମସିହାରେ ବର୍ତ୍ତମାନର ମନ୍ଦିରକୁ ନିର୍ମାଣ କରିଥିଲେ। ଏଠାରେ ଚୈତ୍ର-ବୈଶାଖ ମାସରେ ଦଣ୍ଡନାଟର ଶୁଭାରମ୍ଭ ହୁଏ। ଶିବରାତ୍ରି ମହାସମାରୋହରେ ପାଳିତ ହୋଇଥାଏ।

ଡର୍ଗଟା - ରାମେଶ୍ୱର ଶିବ:-

ରେଢ଼ାଖୋଲ - ନାକଟି ଦେଉଳ ରାସ୍ତାରେ ୧୫ କିଲୋମିଟର ଦୂରରେ ଡର୍ଗଟା ଗ୍ରାମ। ଗ୍ରାମର ଆରମ୍ଭରେ ପଡେ ଏକ ଜଟା ବା ପୁଷ୍କରିଣୀ। ଏହି ପୁଷ୍କରିଣୀ ନିକଟରେ ମନ୍ଦିରଟି ବିଦ୍ୟମାନ। ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଏହି ମନ୍ଦିର ନିର୍ମିତ। ମନ୍ଦିରଟି ଛୋଟ । ଚୈତ୍ର - ବୈଶାଖ ମାସରେ ଏଠାରୁ ଦଣ୍ଡ ଦୁଇଖାତୁ ବାହାରିଥାଏ।

ନାକଟି ଦେଉଳ - କନକେଶ୍ୱର ଶିବ:-

ନାକଟି ଦେଉଳ ସଦର ମହକୁମାର ଏକ ଟାଇଲଗୁଡ଼ିରେ ବର୍ତ୍ତମାନ ପର୍ଯ୍ୟନ୍ତ ମଧ କନକେଶ୍ୱର ଶିବ ପୂଜା ପାଉଛନ୍ତି। କନକେଶ୍ୱର ଶିବଙ୍କର କୌଣସି ମନ୍ଦିର ଆଜି ସୁଦ୍ଧା ହୋଇପାରିନାହିଁ (୨୦୦୦ଖ୍ରୀ:) ।

ସରାପାଲି - ସିଦ୍ଧେଶ୍ୱର ବାବା -

ଟିକିରା ନଦୀର ବାମ କୂଳରେ ଅବସ୍ଥିତ ଏକ ଗୁଡ଼ିଘରେ ସିଦ୍ଧେଶ୍ୱର ବାବା ଶିବମୂର୍ତ୍ତି ପୂଜା ପାଉଛନ୍ତି। କିମ୍ବଦନ୍ତୀ କହେ ଏହି ମୂର୍ତ୍ତି ସମ୍ମୁଖରେ ଥିବା ବୃଷଭକୁ, ବାମଣ୍ଡା ରାଜା ଉପର ମୁଣ୍ଡା - ଯୋରାପାଲି ପଣ୍ଟୁଆସ୍ଥିତ ଝାଡେଶ୍ୱର ଶିବ ମନ୍ଦିରରୁ ନେଇ ଯାଉଥିବା ବେଳେ, ବାଟରେ ଭାରି ହେବାରୁ ଏହି ସ୍ଥାନରେ ଛାଡ଼ି ପଳାଇ ଗଲେ।

ବଳମ ଶିବ ମନ୍ଦିର :-

ବଳମ ଠାରେ ଅବସ୍ଥିତ ଶିବ ମନ୍ଦିରରୁ ଦଣ୍ଡଯାତ୍ରା ବାହାରି ଥାଏ।

ଗିରିପୁର ଶିବ ମନ୍ଦିର:-

ଗିରି ପୁର ଠାରେ ଏକ ଛୋଟ ମନ୍ଦିରରେ ଶିବ ମୂର୍ତ୍ତି ପୂଜା ପାଉଛନ୍ତି।

ପାଣିମୁରା - ଭୋଳେଶ୍ୱର ଶିବ:-

ଏହି ସ୍ଥାନଟି ପର୍ବତ ଶିଖର ଦେଶରେ ଗୁମ୍ଫା ପରି ସ୍ଥାନ। ସେ ସ୍ଥାନକୁ [illegible] ଅତ୍ୟନ୍ତ କଷ୍ଟସାଧ। ପାହାଡର ଶୀର୍ଷ ଦେଶରେ ଏକ ବଡ଼ ଶିଳା ଝୁଲି [illegible] ରହିଛି। ସେ ସ୍ଥାନରେ ଏକ ବଡ ପଥରକୁ ବୃଷଭ କହି ପୂଜା ଅର୍ଚ୍ଚନା କ[illegible]ଥାଏ। ସେହି ପଥର ଫାଟ ମଧରେ ବହୁ ପ୍ରାଚୀନ କାଳର ପଇସା ସବୁ ଥିବାର ଲେଖକ ନିଜେ ଦେଖିବାକୁ ପାଇଛନ୍ତି। ବାଘୁଆ ମହୁମାଛିଙ୍କର ବାସସ୍ଥଳୀ ଏହି ସ୍ଥାନ। ତଳକୁ ଏକ ଚିରସ୍ରୋତା ଝରଣା। ଚତୁର୍ମାସ୍ୟା ବ୍ୟତୀତ ଅନ୍ୟ ସମୟରେ ସେ ସ୍ଥାନକୁ ଯିବାରେ

ବିଶେଷ ଅସୁବିଧା ନାହିଁ । ଏହି ସ୍ଥାନକୁ ଯିବାକୁ ହେଲେ ରେଢ଼ାଖୋଲରୁ ବାଲିକିଆରୀ ବାଟେ କିମ୍ବା ନାକଟି ଦେଉଳ ଉପରମୁଣ୍ଡାଠାରୁ ସୋଡୋ ବାଟେ ପାଣିମୁରା ଗ୍ରାମଦେଇ ନିକଟସ୍ଥ ପାହାଡ ପାଦଦେଶକୁ ଯାଇହୁଏ । ସେଠାରୁ ଝରଣା କୂଳେ କୂଳେ ଯାଇ ସେହି ସ୍ଥାନରେ ପହଞ୍ଚି ହୁଏ । ଦଣ୍ଡଗୁରୁ ଯୋଗୀନ୍ଦ୍ର ପ୍ରଧାନ ଭୋଳେଶ୍ୱର ଶିବଙ୍କ ବନ୍ଦନାରେ ଲେଖିଛନ୍ତି ।

''ଆହେ ଭୋଳେଶ୍ୱର ଦେବଙ୍କ ଈଶ୍ୱର
ଜୟ ପାର୍ବତୀରମଣ,
ଗିରି ଶିଖେ ରହି ତୁମ୍ଭ ଆଶ୍ରା ପାଇ
ପର୍ବତେ କର ଭ୍ରମଣ ।(୧)
ପାଣିମଡା ଗ୍ରାମ ପୂର୍ବଦିଗେ ସ୍ଥାନ
ଦିଶଇ କେଡେ ସୁନ୍ଦର,
ସନ୍ଥଜନଙ୍କୁ ଏ ସୁବର୍ଣ୍ଣ ଦିଶଇ
ପାପୀଙ୍କୁ ଦିଶେ ପଥର । (୨)
ପାଷାଣେ ପାଷାଣ ମନ୍ଦିର ହୋଇଛି
ଶୋଭା ଏକାମ୍ର କାନନ,
ଶିରେ ଜଟାଭାର ସଭିଙ୍କି ସୁନ୍ଦର
ଲଲାଟେ ଚନ୍ଦ୍ରମା ମାନ ।(୩)
ଆହେ ଭୋଳାନାଥ ରେଢ଼ାଖୋଲେ ଖ୍ୟାତ
ନାମ ହେଉଛି ପ୍ରକଟ,
ବାୟାନାଥ କହି ଚଳେଧାର ହୋଇ
ଯାଅ ତାଙ୍କ ସନ୍ନିକଟ । (୪)

ଅନ୍ୟାନ୍ୟ ଶିବ ମନ୍ଦିର-

କଦଳୀ ଗଡରେ ଏକ ଶିବ ମନ୍ଦିର ବିଦ୍ୟମାନ । ମୃଷାକଟା ଶିବ ମନ୍ଦିର ଗଡଗଡ ବାହାଲର ଶୀତଳ ପ୍ରସାଦ ପ୍ରଧାନଙ୍କ ଦ୍ୱାରା ନିର୍ମିତ । କୁଟାସିଙ୍ଗା ଶିବ ମନ୍ଦିର ପ୍ରଭୃତି ରେଢ଼ାଖୋଲ ଅଞ୍ଚଳରେ ବିଦ୍ୟମାନ ।

ବୁରୁଡା ମାହେଶ୍ୱରୀ:-

ରେଢ଼ାଖୋଲ ଠାରୁ ୧୫ କିଲୋମିଟର ଉତ୍ତରକୁ ଗଲେ, ଜଙ୍ଗଲ ମଧ୍ୟରେ ପଡେ ବୁରୁଡା ଗ୍ରାମ । ସୁରୁବାଲିଯୋରର ବାମକୂଳରେ ଥିବା ଏକ ପୁରୁଣା ବରଗଛ ମୂଳର ଗୁଡ଼ିଘରେ ମା ମାହେଶ୍ୱରୀ ଅଧିଷ୍ଠିତା । ମୂର୍ତ୍ତି ଚତୁର୍ଭୁଜା ଓ କାଳୀ ମୂର୍ତ୍ତି । ଦଶହରାରେ ଷୋଳପୂଜା ହେବାର ବିଧାନ ରହିଛି । ମହିଷବଳି ଏ ପର୍ଯ୍ୟନ୍ତ ମଧ୍ୟ ପଡ଼ିଆସୁଛି । ଏହି

ମନ୍ଦିରରେ ତାଲଖାଇ ଦୁର୍ଗାଷ୍ଟମୀ ଦିନ ପାଳିତ ହୁଏ । ମାହେଶ୍ୱରୀ ପ୍ରତ୍ୟକ୍ଷଦେବୀ । ମହାମାରୀ, ବସନ୍ତ ସମୟରେ ରେଢ଼ାଖୋଲର ରାଜା ଉଆସକୁ ମାହେଶ୍ୱରୀଙ୍କୁ ଶୋଭାଯାତ୍ରାରେ ନିଆଯାଉଥିଲା । ମାହେଶ୍ୱରୀଙ୍କୁ ନଗର ପରିକ୍ରମା କରାଇଲେ ମହାମାରୀ ଓ ବସନ୍ତ ପ୍ରଭୃତି ରୋଗରୁ ରକ୍ଷା ମିଳେ ବୋଲି ଜନବିଶ୍ୱାସ ରହିଛି । ଓଡ଼ିଶାର ବିଖ୍ୟାତ କବି ଭୀମାଧୀବରଙ୍କ ବାସସ୍ଥାନ ମଧ ଏହି ବୁରୁଡା ଗ୍ରାମ ଥିବାର ଜଣାଯାଏ ।

କନ୍ତ ଦେବୀ:-

ରେଢ଼ାଖୋଲ ରାଜ୍ୟର ସୃଷ୍ଟି ପୂର୍ବରୁ ଏହା ବଣାଇ ରାଜ୍ୟର ଏକ ଜମିଦାରୀ ଥିଲା । ବଣାଇର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି 'କନ୍ତଦେବୀ' । କନ୍ତଦେବୀଙ୍କ ନିକଟରେ ଦଶହରା ସମୟରେ ବିଶେଷ ପୂଜା ଅନୁଷ୍ଠିତ ହୁଏ । ଖଣ୍ଡାଧାର ଜଳପ୍ରପାତ ନିକଟସ୍ଥ ସାନଢଲ ଗ୍ରାମ ଏକ ଭୂୟାଁ ଅଧ୍ୟୁଷିତ ଅଞ୍ଚଳ । ସେହି ଗ୍ରାମ ନିକଟସ୍ଥ ଏକ ପାହାଡ ଗୁମ୍ଫାରେ କନ୍ତଦେବୀଙ୍କ ପ୍ରତିମାକୁ ଲୁଚାଇ ରଖାଯାଏ । ଦଶହରା ଉତ୍ସବ ସମୟରେ ଏକ ନିର୍ଦ୍ଦିଷ୍ଟ ଭୂୟାଁ ପରିବାରର ଜଣେ ଉତ୍ତରାଧିକାରୀ ଦେହୁରୀଙ୍କ ଦ୍ୱାରା କନ୍ତଦେବୀଙ୍କ ପ୍ରତିମାକୁ ଗୁମ୍ଫାରୁ ବାହାରକୁ ଅଣାଯାଏ ଏବଂ ପୂଜାପରେ ପୁଣି ସେହି ସ୍ଥାନରେ ଲୁଚାଇ ରଖାଯାଏ ।*

ଭୂୟାଁ ପୂଜକ ବା ଦେହୁରୀ ଆଶ୍ୱିନ ଶୁକ୍ଳ ଦ୍ୱିତୀୟା ଦିନ ସେଠାରୁ ଦେବୀଙ୍କୁ ଆଣି ପୌର୍ଣ୍ଣମୀ ପର୍ଯ୍ୟନ୍ତ ଏଗାର ଖଣ୍ଡ ଗ୍ରାମ ମଧଦେଇ ଘରେ ଘରେ ପୂଜା କରି ଶେଷରେ ନବମୀ ଦିନ ରାଜବାଟୀର ଅସ୍ତ୍ର ଭଣ୍ଡାରରେ ଦିନେ ରଖିଥାନ୍ତି । ଦେବୀଙ୍କୁ ବିଜୟାଦଶମୀ ଦିନ ସହର ପରିକ୍ରମା କରାଇ ପୁଣି ଗୁମ୍ଫାକୁ ନେଇଥାନ୍ତି । କନ୍ତଦେବୀ ଜଣେ କୃଷକ ଦ୍ୱାରା କନ୍ତସରା ଗ୍ରାମରୁ ଆବିଷ୍କୃତ ହୋଇଥିଲେ ।

ସେହିପରି ରେଢ଼ାଖୋଲ ଅଞ୍ଚଳରେ କନ୍ତଦେବୀଙ୍କ ପୂଜା ପ୍ରଚଳିତ ଥିଲା । କନ୍ତଦେବୀଙ୍କୁ କେହି କେହି କର୍ଣ୍ଣତା ଦେବୀ ବା କୁନ୍ତୀଦେବୀ ବୋଲି କହିଥାନ୍ତି । ବଣାଇରେ ଆଦିବାସୀ ଭୂୟାଁ ଓ ହିନ୍ଦୁମାନେ ସମସ୍ତେ କନ୍ତଦେବୀଙ୍କୁ ପୂଜା କରୁଥିଲେ । ସେହିପରି ରେଢ଼ାଖୋଲ ରାଜ୍ୟରେ ବିଶେଷତଃ ଝୁନୁରୁଗଡରେ ପାଞ୍ଚଖଣ୍ଡା ପୂଜା ଓ କର୍ଣ୍ଣତାଦେବୀଙ୍କର ପୂଜା ପ୍ରଚଳିତ ଥିଲା । ବର୍ତ୍ତମାନ ରେଢ଼ାଖୋଲର ନାକଟି ଦେଉଳ ଯିବା ବାଟରେ ତେରବେଡା ପରେ କର୍ଣ୍ଣତା ଦେବୀ ବା କୁନ୍ତୀ ଦେବୀଙ୍କର ପୂଜା ହେଉଛି । କର୍ଣ୍ଣତା ଦେବୀଙ୍କ ଛୋଟ ମନ୍ଦିରଟିଏ ରାସ୍ତା କଡରେ ବିଦ୍ୟମାନ । ବାଟୋଇମାନେ ମାନସିକ ଅନୁସାରେ ସେଠାକୁ ପୂଜା ଦେବାକୁ ଯାଆନ୍ତି ।

## ରେଢ଼ାଖୋଲ ରାଜ୍ୟରେ ବିଷ୍ଣୁ ଉପାସନା

ବୈଷ୍ଣବ ମନ୍ଦିର :-

ଗଙ୍ଗ ବଂଶର ଗଜପତି ରାଜା ଚୋଡଗଙ୍ଗ ଦେବଙ୍କ ସମୟରେ 'ରାମାନୁଜ' ଓଡ଼ିଶାକୁ ଆସି 'ବିଶିଷ୍ଟା ଦ୍ୱୈତ' ମତର ବହୁଳ ପ୍ରଚାର କରିଥିଲେ । ଏହି ସଂପ୍ରଦାୟ ଶ୍ରୀ ବୈଷ୍ଣବ ସମ୍ପ୍ରଦାୟ ନାମରେ ବିଦିତ । ସେହି ସମୟରୁ ଓଡ଼ିଶାର ବହୁ ସ୍ଥାନରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି

* ବଣାଇ - ଡଃ କୈଳାସ ଚନ୍ଦ୍ର ଦାସ - ନବପତ୍ର - ୧୬ଶବର୍ଷ ୪ର୍ଥ ସଂଖ୍ୟା - ୧୯୮୮

ଓ ଗୋପୀନାଥ ମୂର୍ତ୍ତିଙ୍କ ଆରାଧନା ଉଦ୍ଦେଶ୍ୟରେ ବହୁମଠ ଓ ମନ୍ଦିର ପ୍ରତିଷ୍ଠିତ ହେବାକୁ ଲାଗିଲା । ଗଙ୍ଗ ନରପତି ପ୍ରଥମ ନରସିଂହ ଦେବ ରେମୁଣାର ମଦନ -ଗୋପାଳ ମନ୍ଦିର ପ୍ରତିଷ୍ଠା କରିଥିଲେ । ସୂର୍ଯ୍ୟବଂଶର ଗଜପତି ପୁରୁଷୋତ୍ତମ ଦେବ ମଦନ - ଗୋପାଳଙ୍କ ନାମରେ ଭୂ ସମ୍ପତ୍ତି ଦାନ କରିଥିଲେ । ସେ ବିଦ୍ୟାନଗରୀରୁ ସାକ୍ଷୀଗୋପାଳ ମୂର୍ତ୍ତି ଆଣି ନିଜ ପ୍ରାସାଦରେ ସ୍ଥାପନ କରିଥିଲେ । ଏ ଉଭୟ ମୂର୍ତ୍ତିରେ ଶ୍ରୀ ରାଧା ନଥିବାରୁ ସମ୍ଭବତଃ ସେତେବେଳ ପର୍ଯ୍ୟନ୍ତ ରାଧାକୃଷ୍ଣ ଉପାସନା ଓଡ଼ିଶାରେ ପ୍ରାଧାନ୍ୟ ଲାଭ କରିନଥିଲା । ସମ୍ଭବତଃ ଓଡ଼ିଶାରେ ଏହା ହେଉଛି ଶ୍ରୀ କୃଷ୍ଣ ଉପାସନାର ପ୍ରଥମ ଉତ୍ସ । ସୂର୍ଯ୍ୟବଂଶୀ ରାଜା ପ୍ରତାପରୁଦ୍ରଙ୍କ ସମୟରେ ଶ୍ରୀ ଚୈତନ୍ୟ ଓଡ଼ିଶାକୁ ଆସି ଶ୍ରଦ୍ଧାଭକ୍ତି ମୂଳକ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ଶ୍ରୀ ଚୈତନ୍ୟଙ୍କ ପୂର୍ବ ବୈଷ୍ଣବଧର୍ମର ଦୁଇଟି ଧାରା ଗୋଟିଏ ରାଧାଙ୍କୁ ଆଶ୍ରୟ କରି ବିଶୁଦ୍ଧ ଭକ୍ତିଧର୍ମ ଏବଂ ଅନ୍ୟଟି ବୁଦ୍ଧରୂପୀ ଶ୍ରୀ ଜଗନ୍ନାଥଙ୍କ ପ୍ରତି ଜ୍ଞାନ ମିଶ୍ରା ଭକ୍ତି । ରେଢ଼ାଖୋଲର ବିଭିନ୍ନ ସ୍ଥାନରେ ଜଗନ୍ନାଥ ମନ୍ଦିର, ରାଧାକୃଷ୍ଣ ମନ୍ଦିର, କୁଞ୍ଜାମରା ଦେଉଳ ଦ୍ୱାରବନ୍ଧରେ ଲକ୍ଷ୍ମୀ, ଖୋଲଗଡ ନୀଳକଣ୍ଠେଶ୍ୱର ଶିବ ମନ୍ଦିର ସମ୍ମୁଖଭାଗରେ ଲକ୍ଷ୍ମୀ ବିଦ୍ୟମାନ । ଲକ୍ଷ୍ମୀ ଓ ବିଷ୍ଣୁଙ୍କ ମୂର୍ତ୍ତିରୁ ରେଢ଼ାଖୋଲରେ ବୈଷ୍ଣବଧର୍ମର ପ୍ରଭାବ ଅନୁମିତ ହୁଏ ।

ଜଗନ୍ନାଥ ମନ୍ଦିର - ରାମପୁର (ରେଢ଼ାଖୋଲ)-

ରେଢ଼ାଖୋଲର ଜଗନ୍ନାଥ ମନ୍ଦିର ବସଷ୍ଟାଣ୍ଡ ନିକଟସ୍ଥ ପଡ଼ିଆରେ ନିର୍ମିତ ହୋଇଛି । ଏହି ମନ୍ଦିର ରେଢ଼ାଖୋଲ ରାଜା ଗୌରଚନ୍ଦ୍ର ଢେନାମଣିଙ୍କ କୀର୍ତ୍ତି । ମନ୍ଦିରଟି ୫୬ ଫୁଟ ଉଚ୍ଚ, ଦେଖିବାକୁ ଏକ ସରୁ ଗୀର୍ଜା ପରି । ଏହାର ଭୂମି ଓ ବାଡ ବଡ଼ ନଥିବାରୁ ମନ୍ଦିରଟି ଏହିପରି ଦେଖାଯାଏ । ସେଠାରେ ବର୍ତ୍ତମାନ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ସହିତ ଆଉ ଦୁଇଟି ଜଗନ୍ନାଥ ଦାରୁ ମୂର୍ତ୍ତି (ଗୋଟିଏ ବଡ଼, ଅନ୍ୟଟି ଛୋଟ) ସେଠାରେ ରହିପୂଜା ପାଇ ଆସୁଅଛନ୍ତି । ଏଠାରେ ଆଷାଢ଼ ମାସ ଶୁକ୍ଳ ଦ୍ୱିତୀୟା ଦିନ ନିର୍ମିତ ହୋଇଥିବା ଦୁଇଟି ରଥରେ ଠାକୁରଙ୍କୁ ବସାଇ ରଥଯାତ୍ରା ଉତ୍ସବ ଅନୁଷ୍ଠିତ କରାଯାଏ । ବଡ ରଥରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ଅନ୍ୟ ଛୋଟ ରଥରେ ଦୁଇଟି ଦଧିବାମନ (ଜଗନ୍ନାଥ) ମୂର୍ତ୍ତିଙ୍କୁ ଅଧିରୂଢ଼ କରାଇ ଯଦୁମଣି ପାଟଣାସ୍ଥିତ ଶ୍ରୀ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ନିଆଯାଏ ଓ ପୁଣି ବାହୁଡା ଦଶମୀ ଦିନ ବାହୁଡା ଯାତ୍ରା କରି ଠାକୁରମାନେ ଜଗନ୍ନାଥ ମନ୍ଦିରକୁ ଲେଉଟି ଆସନ୍ତି । ସମ୍ବଲପୁର ଅଞ୍ଚଳରେ ପାଳିତ ହେଉଥିବା ବଡ ରଥଯାତ୍ରାମାନଙ୍କ ମଧ୍ୟରେ ଗୋଟିଏ ରେଢ଼ାଖୋଲର ରଥଯାତ୍ରା, ଅନ୍ୟଟି ଭଟଲି ବ୍ଲକ ସଦର ମହକୁମାସ୍ଥିତ ଦଧିବାମନଙ୍କ ରଥଯାତ୍ରା ।

ଅନ୍ୟାନ୍ୟ ଜଗନ୍ନାଥ ମନ୍ଦିର:-

ନାକଟି ଦେଉଳର ଜଗନ୍ନାଥ ପ୍ରସାଦ ଗ୍ରାମରେ ଏକ ଛୋଟ ରଥହୁଏ ଓ ସେଠାରେ ରଥଯାତ୍ରା ଉତ୍ସବ ପାଳିତ ହୁଏ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ସେଠାରେ ଥିବା ଗୁଡ଼ିଘରେ

ରହି ପୂଜା ପାଇଥାଆନ୍ତି । କୁଞ୍ଜାମରା ଠାରେ ମଧ୍ୟ ରଥଯାତ୍ରା ଅନୁଷ୍ଠିତ ହୁଏ । ଝୁମୁରୁଗଡରୁ ଆସିଥିବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ସେଠାକାର ଏକ ଗୁଡ଼ିଘରେ ପୂଜା ପାଉଥାନ୍ତି । ଏହାଛଡା ସରାପାଲି ଠାରେ ମଧ୍ୟ ରଥଯାତ୍ରା ଅନୁଷ୍ଠିତ ହୁଏ ।

ରାଧାକୃଷ୍ଣ ମନ୍ଦିର :-

ରେଢ଼ାଖୋଲଘିତ, ବସଷ୍ଟାଣ୍ଡ ପଡ଼ିଆରେ ରାଜପ୍ରାସାଦ ନିକଟରେ ଏକ ଛୋଟ ସୁନ୍ଦର ମୁଖଶାଳା ଯୁକ୍ତ ରାଧାକୃଷ୍ଣ ମନ୍ଦିର ନିର୍ମିତ ହୋଇଛି । ସେଠାରେ ଜନ୍ମାଷ୍ଟମୀ ମହାସମାରୋହରେ ପାଳିତ ହୋଇଥାଏ ।

ଶ୍ରୀ ଶ୍ରୀ ରାଧାକୃଷ୍ଣଙ୍କ ମନ୍ଦିର:-

ରେଢ଼ାଖୋଲର କେରାଣ୍ଡିଯୋର ଦକ୍ଷିଣ ତୀରରେ ଜଳିନ୍ଦର - ଖନ୍ଦାଢ଼ିପ ସୀମାରେ ଶ୍ରୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ ସଂସଦ ଆନୁକୂଲ୍ୟରେ ଏକ ରାଧାକୃଷ୍ଣ ମନ୍ଦିର ନୂତନ ହୋଇ ନିର୍ମାଣ କରାଯାଇଛି । ଏହି ସ୍ଥାନରେ ଏକ ମଣ୍ଡପ ନିର୍ମାଣ କରି ମୃଣ୍ମୟ ରାଧାକୃଷ୍ଣ ମୂର୍ତ୍ତି ଗଠନ କରି ଶରଦରାସୋତ୍ସବ ପାଳିତ ହୋଇ ଆସୁଥିଲା । ଶ୍ରୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ ସଂସଦ ଆନୁକୂଲ୍ୟରେ ସେହି ମଣ୍ଡପକୁ ତେରଗୋଟି ଖମ୍ବଦ୍ୱାରା ମଜଭୁତ କରାଯାଇ ଏକ ମନ୍ଦିର ଶିଖର ଶୈଳୀରେ ନିର୍ମିତ ହୋଇଛି । ସେଠାରେ ଶରତ ରାସରେ ପାଞ୍ଚଦିନ ବ୍ୟାପୀ କିର୍ତ୍ତନ, ପାଲା, ଧର୍ମାଲୋଚନା ଓ ସଙ୍ଗୀତ ସମାରୋହ ଇତ୍ୟାଦି ହୋଇଆସୁଅଛି । ଦୋଳ ଉତ୍ସବରେ ରାଧାକୃଷ୍ଣ ବିମାନରେ ପଡା ପଡା ବୁଲି ହୋଲି ଖେଳ ଖେଳି ମନ୍ଦିରକୁ ଫେରି ଆସନ୍ତି । ସେଠାରେ ମଧ୍ୟ ନୂତନ ପଞ୍ଜିକା ପାଠ କରାଯାଏ । ମନ୍ଦିରର ମୁଖଶାଳା ସମ୍ପୂର୍ଣ୍ଣ ହୋଇ ନାହିଁ ।

ରାଧାକୃଷ୍ଣ ମନ୍ଦିର ଉପର ମୁଣ୍ଡା :-

ନାକଟି ଦେଉଳ ଉପରମୁଣ୍ଡାରେ ରାଧାକୃଷ୍ଣ ଏକ ଗୁଡ଼ିଘରେ ପୂଜା ପାଉଛନ୍ତି । ଏହିଠାରେ ଜନ୍ମାଷ୍ଟମୀ ପାଳିତ ହୋଇଥାଏ ।

ଗୋପାଳଜିଉ ମନ୍ଦିର, ଢ଼ଙ୍କିଚା :-

ରେଢ଼ାଖୋଲ ନାକଟି ଦେଉଳ ରାସ୍ତାରେ ଗଲେ ଢଙ୍କିଚା ଗ୍ରାମ ପଡେ । ଏହି ଗ୍ରାମରେ ଥିବା ଏକ ବନ ମନ୍ଦିରରେ ଗୋପାଳଜିଉ ଓ ବାମରେ ଭୁବନେଶ୍ୱରୀ ପୂଜା ପାଉଛନ୍ତି । ମନ୍ଦିରଟି ଖ୍ରୀ ୧୯୧୬ ମସିହାରେ ଢଙ୍କିଚା ଗ୍ରାମର ଗୋପାଳ ପ୍ରଧାନ ଓଗେରଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହି ମନ୍ଦିରରେ ଜନ୍ମାଷ୍ଟମୀ ଉତ୍ସବ ଓ ଦୋଳୋତ୍ସବ ମହାସମାରୋହରେ ପାଳିତ ହୁଏ । ଆଶ୍ୱିନ ମାସରେ ଭୁବନେଶ୍ୱରୀଙ୍କ ଠାରେ ବିଶେଷ ପୂଜା ଅନୁଷ୍ଠିତ ହୁଏ । ଅନ୍ୟାନ୍ୟ ପର୍ବ ମଧ୍ୟରେ ମକର, ପୌଷପୂର୍ଣ୍ଣିମା, ଶ୍ରାବଣ ପୂର୍ଣ୍ଣିମା ବା ଗହ୍ମାପୂର୍ଣ୍ଣିମା, ରାମନବମୀ ପ୍ରଭୃତି ପାଳିତ ହୋଇଥାଏ ।

ରଘୁନାଥଜିଉ ମନ୍ଦିର - ରଥପଡା, ରେଢ଼ାଖୋଲ:-

ରେଢ଼ାଖୋଲସ୍ଥିତ ରଥପଡାରେ ରାମ, ଲକ୍ଷ୍ମଣ ଓ ସୀତାଙ୍କର ବଡ଼ ବଡ଼ ପୂର୍ଣ୍ଣା—ବୟବ ମୂର୍ତ୍ତି ଏକ ଗୁଡ଼ିଘରେ ପୂଜା ପାଇଆସୁଅଛନ୍ତି । ଶ୍ରୀରାମ ନବମୀ ଦିନ ଠାରୁ ଆରମ୍ଭ କରି ନଅଦିନ ବ୍ୟାପି ଏଠାରେ 'ରାମ ଚରିତ ମାନସ' ପାରାୟଣ କରାଯାଏ । ନବମୀଦିନ ବା ଶେଷ ଦିନ ବିଭିନ୍ନ ଲୋକଙ୍କ ଠାରୁ ତାଲିକାନୁଯାୟୀ ଭୋଗ ସାମଗ୍ରୀ ଆଦାୟ କରାଯାଏ ଏବଂ ସାମୂହିକ ଭାବେ ଏକ ବଡଭୋଜିର ଆୟୋଜନ ହୋଇଥାଏ । ଦିନ ୧ ଘଟିକା ବା ୨ ଘଟିକା ସମୟରେ ପଂକ୍ତି ଭୋଜନ ସମାପନାନ୍ତେ, ନବଦିନ ଧରି ଚାଲିଥିବା ଯାତ୍ରାର ଅବସାନ ହୁଏ । ଏହି ମନ୍ଦିର ଓ ଏହାର  ନବଦିନ ବ୍ୟାପୀ ମହୋତ୍ସବ ଓଡ଼ିଶା ସରକାରଙ୍କ ନିଯୁକ୍ତ ଟ୍ରଷ୍ଟି ଦ୍ୱାରା ପରିଚାଳିତ ହୁଏ ଓ ଏହି ପରିଚାଳନା ଭାର ସ୍ଥାନୀୟ ତହସିଲଦାରଙ୍କ ଉପରେ ନ୍ୟସ୍ତ ଥାଏ ।

ରଘୁନାଥଜିଉ ମନ୍ଦିର - ଯଦୁମଣି ପାଟଣା - ରେଢ଼ାଖୋଲ :-

ଯଦୁମଣି ପାଟଣାରେ ଥିବା ଶ୍ରୀ ଗୁଣ୍ଡିଚା ଗୁଡ଼ିଘର ନିକଟରେ ଥିବା ଅନ୍ୟ ଏକ ଗୁଡ଼ି ଘରେ ରାମ, ଲକ୍ଷ୍ମଣ ଓ ସୀତାଙ୍କ ମୂର୍ତ୍ତି ପୂଜା ପାଉଛନ୍ତି । ବଡ ରଘୁନାଥ ଜିଉ ମନ୍ଦିର ରେଢ଼ାଖୋଲ ରାଜା ଗୌରଚନ୍ଦ୍ର ଜେନାମଣି ପ୍ରତିଷ୍ଠା କରିଥିଲାବେଳେ, ଯଦୁମଣି ପାଟଣାସ୍ଥିତ ରଘୁନାଥ ଜିଉ ମନ୍ଦିର ଗୌରଚନ୍ଦ୍ରଙ୍କ ରାଣୀଙ୍କ ଦ୍ୱାରା ପ୍ରତିଷ୍ଠିତ । ଛୋଟ ରଘୁନାଥ ଜିଉ ମନ୍ଦିରରେ ମଧ ରାମନବମୀ ପାଳନ କରାଯାଏ ।

## ରେଢ଼ାଖୋଲର ଅନ୍ୟାନ୍ୟ ଧର୍ମାନୁଷ୍ଠାନ

ବଡମାଳ ଚର୍ଚ୍ଚ :-

ରେଢ଼ାଖୋଲ ସବ୍‌ଡିଭିଜନର ବଡମାଳ ଠାରେ ନିର୍ମିତ ଏକ ଚର୍ଚ୍ଚରେ ଯିଶୁଖ୍ରୀଷ୍ଟଙ୍କ ଉପାସନା କରାହୁଏ । ବିଶେଷତଃ ଆଦିବାସୀ ଓରାଓଁ ଶ୍ରେଣୀର ଲୋକେ ଖ୍ରୀଷ୍ଟଧର୍ମ ଗ୍ରହଣ କରି ବଡ଼ଦିନ ଓ ଯିଶୁଖ୍ରୀଷ୍ଟଙ୍କ ଜନ୍ମଦିନ ମହାସମାରୋହରେ ପାଳନ କରିଥାନ୍ତି ।

ହିଣ୍ଡୋଳ ଚର୍ଚ୍ଚ :-

ରେଢ଼ାଖୋଲରୁ ୧୦ କିଲୋମିଟର ଓ ବୟାଳିଶ ନମ୍ବର ଜାତୀୟ ରାଜପଥରୁ ୩ କିଲୋମଟର ଦୂରରେ ଥିବା ବଡ ହିଣ୍ଡୋଳର ଏକ ପଡାରେ ଯିଶୁଖ୍ରୀଷ୍ଟଙ୍କ ଉପାସନା ପାଇଁ ଚର୍ଚ୍ଚଟିଏ ନିର୍ମିତ ହୋଇଅଛି ।

## ମସଜିଦ୍

ରାମପୁର (ରେଢ଼ାଖୋଲ) ମସ୍‌ଜିଦ୍ :-

ରେଢ଼ାଖୋଲର ପୋଲିସ୍ ଥାନା ନିକଟରେ ମୁସଲମାନ  ସମ୍ପ୍ରଦାୟର ଏକ ମସ୍‌ଜିଦ୍ ଅବସ୍ଥିତ । ରେଢ଼ାଖୋଲରେ ଥିବା ମୁସଲମାନ ସମ୍ପ୍ରଦାୟ ଏଠାରେ ଆଲ୍ଲାଙ୍କ ଉଦ୍ଦେଶ୍ୟରେ ନମାଜ ପାଠ କରନ୍ତି ଓ ଇଦ୍, ମହରମ୍ ପ୍ରଭୃତି ଇସ୍‌ଲାମୀୟ ପର୍ବ ପାଳନ କରନ୍ତି ।

# ଦଶମ ପରିଚ୍ଛେଦ

# ରେଢ଼ାଖୋଲର ସାହିତ୍ୟ

## ସନ୍ଥକବି ଭୀମଭୋଇ-

ଓଡ଼ିଶାର ସଂସ୍କୃତି କହିଲେ ଆର୍ଯ୍ୟ, ଦ୍ରାବିଡ ଓ ଶାବରୀ ସଂସ୍କୃତିର ସମ୍ମିଳିତ ରୂପକୁ ହିଁ ବୁଝାଏ । ଏହି ସଂସ୍କୃତି ଓ ସାହିତ୍ୟକୁ ଅନ୍ୟମାନଙ୍କ ପରି ଆଦିବାସୀ ଶ୍ରେଣୀର ଶବର ଓ କନ୍ଧମାନଙ୍କର ଦାନ କିଛି କମ୍ ନୁହେଁ । ଅଷ୍ଟାଦଶ ଶତାବ୍ଦୀର କନ୍ଧକବି ଯୁଗଦାସ ପଶ୍ଚିମ ଓଡ଼ିଶାର ପ୍ରଧାନ ବୈଷ୍ଣବ କ୍ଷେତ୍ର ଶ୍ରୀ ଶ୍ରୀ ନୃସିଂହନାଥଙ୍କ କଥାବସ୍ତୁକୁ ନେଇ 'ନୃସିଂହ ରଚିତ' ରଚନା କରିଥିଲେ । ''ଜାତିରେ ମୁଁ ହୀନ ଅଟେ ସିନା କନ୍ଧ, ମୁହିଁ କାହୁଁ ଜାଣିବି ଯେ ସଂସକୃତ ପଦ'' । ସେହିପରି ଉନବିଂଶ ଶତାବ୍ଦୀର ମଧ ଭାଗରେ ଆଉ ଜଣେ କନ୍ଧକବି ଆବିର୍ଭୂତ ହେଲେ ସେ ହେଉଛନ୍ତି - ସନ୍ଥକବି ଭୀମଭୋଇ ।

ରେଢ଼ାଖୋଲ ପୁରାତନ ରାଜ୍ୟର କଦଳୀଗଡ, କନ୍ଧରା, କଙ୍କଣପଡା, ମଧୁପୁର, ସଂଗ୍ରାମପୁର ଓ ଜଟାସିଙ୍ଗା◆ ଅଞ୍ଚଳ ବୌଦ ଓ ରାମପୁର (ରେଢ଼ାଖୋଲ)ର ମଧବର୍ତ୍ତି ଅଞ୍ଚଳ । ସେଠାରେ ତାଳ, ଖର୍ଜ୍ଜୁର ପ୍ରଭୃତି ବୃକ୍ଷ ଅଧିକ ସଂଖ୍ୟାରେ ଦେଖାଯାଏ । ସେହି ଅଞ୍ଚଳର ଏକ କନ୍ଧ ଦମ୍ପତି ଧନେଶ୍ୱର ଭୋଇ ଓ ଗୁରୁବାରୀ ଜଟା ସିଙ୍ଗାର ଏକ ଆଡିବନ୍ଧରେ ଥିବା ତାଳବଣରୁ ପାଚିଲା ତାଳ ସଂଗ୍ରହ କରୁଥିଲେ । ସଦ୍ୟ ନବଜାତ ଶିଶୁର କ୍ରନ୍ଦନରୋଳ ଶୁଣିପାରି ନିଃସନ୍ତାନ କନ୍ଧ ଦମ୍ପତି ଧନେଶ୍ୱର ଓ ପତ୍ନୀ ଗୁରୁବାରୀ ଶିଶୁଟିକୁ ପାଇ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ବାତ୍ସଲ୍ୟ ସ୍ନେହରେ ନିଜର ପୁତ୍ର ରୂପେ ଭୀମଙ୍କୁ ପ୍ରତିପାଳନ କଲେ ।

ଭୀମଭୋଇଙ୍କ ଜନ୍ମ ସମୟ୧୮୫୦ଖୀଷ୍ଟାବ୍ଦରେ ହୋଇଥିଲା ବୋଲି ବିଭିନ୍ନ ଲେଖକମାନେ ମତ ଦେଉଥିବା ବେଳେ ତାଙ୍କର ମୃତ୍ୟୁ ସମୟ ୧୮୯୫ ମସିହା ବୋଲି ସର୍ବସମ୍ମତ ।

ଭୀମଭୋଇ ମାତ୍ର ତିନିବର୍ଷ ବୟସରେ ତାଙ୍କର ପିତାଙ୍କୁ ହରାଇଥିଲେ । ବିଧବା ମାତା ଗୁରୁବାରୀ ସ୍ୱାମୀ ଧନେଶ୍ୱରଙ୍କର ମୃତ୍ୟୁପରେ ତାଙ୍କର ଦେବର ଜନାର୍ଦ୍ଦନ (ଦନାଇ) ଭୋଇଙ୍କୁ ଦ୍ୱିତୀୟ ବିବାହ କଲେ । ଦନାଇ ଭୋଇ ରେଢ଼ାଖୋଲ ସନ୍ନିକଟ ମଧୁପୁର ଗ୍ରାମରେ ଭୀମର ଲାଳନପାଳନ ଦାୟିତ୍ୱ ଗୁରୁବାରୀକୁ ଦେଇ ନିକଟସ୍ଥ କଙ୍କଣପଡା ଗ୍ରାମରେ ଗୌନ୍ତିଆ ଚୈତନ୍ୟ ପ୍ରଧାନଙ୍କ ଘରେ ହଳିଆ ରହିଲେ ।

ଭୀମଭୋଇଙ୍କୁ ସାତବର୍ଷ ବୟସ ସମୟରେ ଦନାଇଭୋଇଙ୍କ ଔରସରୁ ଗୁରୁବାରୀଙ୍କ ଗର୍ଭରୁ ଦୁଇଟି ସନ୍ତାନ ଗୋବରୀ ଓ ମୁରଲୀ ଜନ୍ମଲାଭ କଲେ । ନିଜର ଦୁଇ ସନ୍ତାନଙ୍କୁ ପାଇ କନ୍ଧଦମ୍ପତି ଭୀମକୁ ହତାଦର କଲେ ।

---

◆ *ଜଟାସିଙ୍ଗା - ଜଟାସିଙ୍ଗା ଗ୍ରାମ ବର୍ତ୍ତମାନ ସୋନପୁର ଅଞ୍ଚଳରେ ଅବସ୍ଥିତ । ପୂର୍ବରୁ ଏହା ରେଢ଼ାଖୋଲ ରାଜ୍ୟରେ ଥିଲା ।*

ପିତାମାତାଙ୍କ ସ୍ନେହରୁ ବଞ୍ଚିତ ହୋଇ ଭୀମଭୋଇ ଭିକ୍ଷାବୃତ୍ତି କରି ଦିନ କାଟିଲେ । ସେ ସମୟ ସମୟରେ କ୍ଷୁଧା ଓ ତୃଷା ମଧ୍ୟରେ ଜୀବନ ଅତିବାହିତ କରୁଥିଲେ । ଗୌନ୍ତିଆ ଚୈତନ୍ୟ ପ୍ରଧାନଙ୍କ ଘରେ ଦନାର ହଳିଆଥିବା ସମୟରେ ଭୀମଭୋଇ ଚାରିବର୍ଷ ବୟସରୁ ପିତାମାତାଙ୍କ ସଙ୍ଗେ ଯିବାଆସିବା କରୁଥିଲେ । ତାଙ୍କର କୃପାଦୃଷ୍ଟି ଭୀମଙ୍କ ଉପରେ ପଡ଼ିବାରୁ ସେ ତାକୁ ନିଜ ପାଖରେ ରଖିଲେ ।

ଭୀମଭୋଇ ଧାନକୁଟି, ଗାଈ ରଖି ଓ ଗୀତ ଗାଇ ଗୌନ୍ତିଆଙ୍କୁ ସନ୍ତୁଷ୍ଟ କରିପାରିଥିଲେ । ଭୀମଭୋଇ ବାରବର୍ଷରୁ ଚଉଦବର୍ଷ ପର୍ଯ୍ୟନ୍ତ ଗାଈ ଚରାଇ ଗୀତ ଗାଇ ସମୟ କଟାଇ ଥିଲେ ।

ଭୀମଭୋଇ ଦିନେ କନ୍ଧରାଗ୍ରାମ ନିକଟରେ ଗାଈ ଚରାଉଥିଲେ । କଙ୍କରପଡା ଫେରିବା ପୂର୍ବରୁ ନିକଟସ୍ଥ ଗିରି ଝରଣାରେ ସ୍ନାନ ପାଇଁ ଯିବା ସମୟରେ ଏକ ଅର୍ଦ୍ଧନିର୍ମିତ କୂପମଧ୍ୟରେ ପଡ଼ିଗଲେବୋଲି କୁହାଯାଏ । ସେ ଗ୍ରାମର ଲୋକମାନେ ଯେତେବେଳେ ତାଙ୍କୁ ଉଠାଇବାକୁ ବସିଲେ ସେ କହିଲେ, ''ମୋତେ ଯିଏ ଚକ୍ଷୁହୀନ କରିଛି - ଦୁନିଆକୁ ଯିଏ ତିଆରି କରିଛି ତାଙ୍କୁ ସେ ଏଠାରେ ପକାଇଛି । ସେ ଆସି ଉଠାଇଲେ ମୁଁ ଉଠିବି ।''

ଏହିପରି ଦୁଇରାତ୍ରି ପାହିଗଲା । ସେ ଉଠିଲେ ନାହିଁ।ତୃତୀୟ ରାତ୍ରିରେ ମହିମା ସ୍ୱାମୀ ଅଦ୍‌ଭୁତ ଭାବେ କପିଳାସରୁ ଆସି ସେଠାରେ ବିରାଜମାନ ହେଲେ । ଭୀମଭୋଇଙ୍କର ଦିବ୍ୟଚକ୍ଷୁ ଖୋଲିଗଲା । ସେ ଶଙ୍ଖଚକ୍ର ଗଦା ପଦ୍ମଧାରୀ ଅଲେଖ ସ୍ୱାମୀଙ୍କ ଦର୍ଶନ ଲାଭ କଲେ । ଅଲେଖ ସ୍ୱାମୀ ଭୀମଙ୍କୁ କୂପରୁ ଉଦ୍ଧାର କରି ତାଙ୍କ ମସ୍ତକରେ ତ୍ରିବାର ତାଳିମାରି କବିତା ଶକ୍ତି ପ୍ରଦାନ କଲେ ଓ ମହିମା ଧର୍ମର ଉପଦେଶ ଦେଲେ ।

ଭୀମଭୋଇ ପ୍ରଥମେ ରଚନା କଲେ -

''ଧାୟି ସ୍ତୁରୁ ପୟରକୁ
ବନ୍ଦେ ଅଲେଖ ସ୍ୱାମୀଙ୍କୁ
ବନ୍ଦନା ପାଦ ପଦ୍ମକୁ ।''

ଏହା ପରେ ପରେ ସେ ନିର୍ବେଦ ସାଧନ, ବ୍ରହ୍ମ ନିରୂପଣ ଗୀତା, ସ୍ତୁତିଚିନ୍ତାମଣି ଆଦି ଅନ୍ତଗୀତା, ଶ୍ରୁତିନିଷେଧ ଗୀତା, ଅଷ୍ଟକ ବିହାରୀ ଗୀତା, ଚଉତିଶାବଳୀ, ଭଜନମାଳା ଓ ବଙ୍ଗଳା ଆଠ ଭଜନ ପ୍ରଭୃତି ରଚନା କରିଥିଲେ । କବିଙ୍କର ପ୍ରଥମ ସୃଷ୍ଟି 'ଆଦିଅନ୍ତ ଗୀତା' ଓ 'ନିର୍ବେଦ ସାଧନ' ବୋଲି ବିଚାର କରାଯାଏ ।

ମହିମା ସ୍ୱାମୀଙ୍କ କୃପାରୁ ସେ ବହୁତ ଭଜନ, ଜଣାଣଗୁଡ଼ିକ ଲେଖି ଯାଇଛନ୍ତି । ଏପରିକି ସେ ଚାରିଗୋଟି ଭଜନ ଚାରିଜଣଙ୍କୁ ଏକ ସମୟରେ ଡାକନ୍ତି ଏବଂ ଶେଷରେ ବାରୋଟିଯାକ ଭଣିତା କରନ୍ତି । ତାଙ୍କର ଚାରିଜଣ ଲେଖନକାର ହେଲେ ହରିପଣ୍ଡା, ବାସୁଦେବ ପଣ୍ଡା, ଧର୍ମାନନ୍ଦ ଦାସ ଓ ମାର୍କଣ୍ଡ ଦାସ । ଭୀମଭୋଇ ନିଜେ ଭଲ ଭଜନ ଗାଇ ଥାନ୍ତି ଏବଂ ତାଙ୍କର ଶିଷ୍ୟମାନେ ଖଞ୍ଜଣୀ ବଜାଇ ପାଳି ଧରନ୍ତି ।

ଭୀମଭୋଇ  ମହିମା ସ୍ୱାମୀ ଓ ତାଙ୍କର ପ୍ରଧାନ ଶିଷ୍ୟ ଗୋବିନ୍ଦ ଦାସଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିବା କଥା ତାଙ୍କର 'ନିର୍ବେଦ ସାଧନ' ପୁସ୍ତକରେ ବର୍ଣ୍ଣିତ ହୋଇଛି । ଏହି ଦୀକ୍ଷା ସମୟ ଖ୍ରୀ ୧୮୬୪ ରୁ ୧୮୬୬ ମଧ୍ୟରେ ହୋଇଥିବାର ଜଣାଯାଏ । ମହିମା ସ୍ୱାମୀ ଭୀମଭୋଇଙ୍କୁ ନିର୍ବେଦ ସାଧନ ଲେଖିବାକୁ  ଉପଦେଶ ଦେଲେ ଏବଂ ଏହି ନିର୍ବେଦ ସାଧନ ହିଁଦୀକ୍ଷା ବୋଲି କହି ଅନ୍ତର୍ଦ୍ଧାନ ହେଲେ । ସେ ଦିନକୁ ଭୀମଭୋଇ ପ୍ରଥମ ଦୀକ୍ଷାବୋଲି ଗ୍ରହଣ କରିଥିଲେ ମଧ ମହିମା ସ୍ୱାମୀ ଖ୍ରୀ ୧୮୬୬ ରେ ଶିଷ୍ୟଙ୍କ ଗହଣରେ କଙ୍କଣପଟା ଆସି ଭୀମଭୋଇଙ୍କୁ ଦୀକ୍ଷା ଦେଇଥିଲେ । ଏହାପରେ ଭୀମଭୋଇ ମହିମାଧର୍ମ ପ୍ରଚାରରେ ବ୍ରତୀ ହୋଇଥିଲେ ।

ମହିମାଧର୍ମ ଖ୍ରୀ ୧୮୬୨ ମସିହା ପର୍ଯ୍ୟନ୍ତ ବିଶେଷଭାବେ ପ୍ରଚାରିତ ହୋଇନଥିଲା । ମହିମାଧର୍ମରେ ଅଲେଖ ବା ଶୂନ୍ୟବ୍ରହ୍ମ ହେଉଛନ୍ତି ମହିମା ସ୍ୱାମୀ ନିଜେ । ଏହି ପୃଥିବୀର ସୃଷ୍ଟି ପ୍ରକ୍ରିୟାର ସେ ହେଉଛନ୍ତି ସର୍ବମୟ, ସର୍ବଶକ୍ତିମାନ କର୍ତ୍ତା । ଏଠାରେ ଶ୍ରେଣୀବିଭାଗ ନାହିଁ । ସୃଷ୍ଟିର କେବଳ ଦୁଇଟି ଶ୍ରେଣୀ - ପୁରୁଷ ଓ ସ୍ତ୍ରୀ । ସୃଷ୍ଟିର ସମସ୍ତ ପ୍ରାଣୀ ମଙ୍ଗଳ କରିବା ଏହି ଧର୍ମର ଉଦ୍ଦେଶ୍ୟ ।

ଏହି ଧର୍ମର କଥା ତତ୍‌କାଳୀନ 'ଉତ୍କଳ ଦୀପିକା' ପତ୍ରିକାରେ ୧-୬-୧୮୬୭ ତାରିଖରେ 'ନୂତନ ଧର୍ମ ପ୍ରଚାର' ଶୀର୍ଷକରେ ପ୍ରକାଶ ପାଇଥିଲା ଏବଂ ସେହି ପତ୍ରିକାରେ ୬-୯- ୧୮୭୩ ସଂଖ୍ୟାରେ ମହିମା ବାବାଜୀ ଶୀର୍ଷକ ଲେଖାରେ ପ୍ରକାଶିତ ହୋଇଛି । ଗୁରୁ ମହିମା ସ୍ୱାମୀ ଖ୍ରୀ ୧୮୬୨ ଠାରୁ ଖ୍ରୀ ୧୮୭୬ ଗ୍ରାମରୁ ଗ୍ରାମକୁ ଯାଇ ଧର୍ମ ପ୍ରଚାର କରିଥିଲେ ।

ଖ୍ରୀ ୧୮୬୬ ଠାରୁ ଭୀମଭୋଇ ରେଢ଼ାଖୋଲ, ଆଠମଲ୍ଲିକ, ବୌଦ ଓ ସୋନପୁର ରାଜ୍ୟର ଅନେକ ଗ୍ରାମ ପଦବ୍ରଜରେ ବୁଲି ମହିମା ଧର୍ମ ପ୍ରଚାର କରିଥିଲେ । ପ୍ରବ୍ରଜ୍ୟା ତାଙ୍କ ଜୀବନରେ ଅଙ୍ଗ ହୋଇ ଯାଇଥିଲା । ସେ ଅଲେଖ ମହିମାଧର୍ମରେ ଜାତି-ବର୍ଣ୍ଣ-ଧର୍ମ-ନିର୍ବିଶେଷରେ ସମସ୍ତଙ୍କୁ ଗ୍ରହଣ କରିବା ପାଇଁ ପ୍ରବର୍ତ୍ତାଇ ଥିଲେ । ସେଥିପାଇଁ ତତ୍‌କାଳୀନ ରେଢ଼ାଖୋଲ ରାଜା ତାଙ୍କୁ ଛଅମାସ ରେଢ଼ାଖୋଲରେ ବନ୍ଦୀକରି କାରାଗାରରେ ରଖିଥିଲେ ।

ଖ୍ରୀ ୧୮୭୬ରେ ମହିମାସ୍ୱାମୀଙ୍କ ମହାନିର୍ବାଣ ପ୍ରାପ୍ତି ହେଲା ପରେ ଭୀମଭୋଇ ରେଢ଼ାଖୋଲ ପରିତ୍ୟାଗ କରି ସୋନପୁରର ବିନକା ଓ ପରେ ପରେ ଖଲିଆପାଲି ଠାରେ ଖ୍ରୀ ୧୮୭୭ରେ ଏକ ଆଶ୍ରମ ପ୍ରତିଷ୍ଠା କରିଥିଲେ । ସେ ସେଠାରେ ତାଙ୍କର ଅବଶିଷ୍ଟ ଜୀବନ ବିତାଇ ଥିଲେ । ସେ ସମୟରେ ସୋନପୁର ରାଜା ଭୀମଭୋଇଙ୍କ  କବିତ୍ୱ ଗୁଣରେ ମୁଗ୍ଧ ହୋଇ ସେଠାରେ ଆଶ୍ରମ ପ୍ରତିଷ୍ଠା ପାଇଁ ଭୂମିଖଞ୍ଜି ଦେଇଥିଲେ ।

ସନ୍ଥକବି ବିନିକାରେ ଥିବା ସମୟରେ ଅନ୍ନପୂର୍ଣ୍ଣା ନାମ୍ନୀ ଏକ ଯୁବତୀ କନ୍ୟା ସ୍ୱପ୍ନାଦିଷ୍ଟ ହୋଇ ତାଙ୍କ ପାଖକୁ  ପ୍ରେରିତ ହୋଇଥିଲେ । ଅନ୍ନପୂର୍ଣ୍ଣା କବିଙ୍କର ସେବାରେ ନିଯୁକ୍ତା

ଥିଲେ । ପରିଶେଷରେ ଭୀମଭୋଇ ଅନ୍ନପୂର୍ଣ୍ଣାଙ୍କୁ ପତ୍ନୀରୂପେ ଗ୍ରହଣ କରି, ଗୃହୀଭକ୍ତ ହୋଇ ଅବଶିଷ୍ଟ ଜୀବନ କଟାଇଥିଲେ । ଖ୍ରୀ ୧୮୮୮ରେ ତାଙ୍କର ଲାବଣ୍ୟବତୀ ନାମ୍ନୀ ଏକ କନ୍ୟା ଓ କପିଳେଶ୍ୱର ନାମରେ ଏକ ପୁତ୍ର ଜନ୍ମ ହୋଇଥିଲେ ।

ଖଳିଆପାଲିଠାରେ ଭୀମଭୋଇ କେବଳ ଧର୍ମ ପ୍ରଚାରରେ ମନୋନିବେଶ ନକରି ଅଧିକ ସମୟ ରଚନାରେ ବ୍ରତୀ ରହିଲେ । ଖ୍ରୀ ୧୮୯୫ଶିବଚତୁର୍ଦ୍ଦଶୀ ଦିନରେ ତାଙ୍କର ମୃତ୍ୟୁ ପରେ ଖଳିଆପାଲି ଆଶ୍ରମର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସମାଧି ଦିଆଗଲା । ଯୋରନ୍ଦାରେ ମହିମା ସ୍ୱାମୀଙ୍କ ସମାଧି ପରି ତାଙ୍କ ସମାଧି ମଧ ଏକ ମନ୍ଦିର ମଧରେ ସଂରକ୍ଷିତ । ଏହି ମନ୍ଦିରରେ ତାଙ୍କ ସହଧର୍ମିଣୀ ଅନ୍ନପୂର୍ଣ୍ଣାଙ୍କର ମଧ ଏକ ସମାଧି ବିଦ୍ୟମାନ ।

ଭୀମା ଧୀବର

ଓଡ଼ିଆ ସାହିତ୍ୟକୁ ଯେଉଁମାନଙ୍କର ବିଶେଷ ଅବଦାନ ଅଛି ସେମାନଙ୍କ ମଧରେ ତିନି ଜଣ ଭୀମଙ୍କ ନାମ ଅତି ପରିଚିତ । ସେମାନେ ହେଲେ ଭୀମା ଧୀବର, ଭୀମ ଦାସ ଓ ଭୀମଭୋଇ । କନ୍ଧ କବି ଭୀମଭୋଇଙ୍କ ବିଷୟରେ ବିସ୍ତୃତ ଭାବେ ଆଲୋଚନା କରାଯାଇଛି । ସପ୍ତଦଶ ଶତାବ୍ଦୀର କବି ଦ୍ୱିତୀୟ ଭୀମ ଜାତିରେ କରଣ । ସେ ଜଣେ ଗୌଡୀୟ ବୈଷ୍ଣବ ମତାବଲମ୍ବୀ ହୋଇଥିବାରୁ ତାଙ୍କ ପ୍ରଣୀତ ଦୁଇଖଣ୍ଡ ପୁସ୍ତକ 'ଭକ୍ତି ରତ୍ନାବଳୀ' ଓ 'ହରିଭକ୍ତିଚନ୍ଦ୍ରୋଦୟ' ବୈଷ୍ଣବ ଧର୍ମର ତତ୍ତ୍ୱ ପ୍ରକାଶିତ ହୋଇଛି । ସେ ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ମଳିପଡା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଭୀମା ଧୀବର ରେଢ଼ାଖୋଲର ପ୍ରଥମ କବି । ଭୀମା ଧୀବର ଓ ଭୀମ ଭୋଇଙ୍କୁ ଜନ୍ମ ଦେଇ ରେଢ଼ାଖୋଲ ସାହିତ୍ୟ ଇତିହାସରେ ବିଶିଷ୍ଟ ସ୍ଥାନ ଅଧିକାର କରିଛି ।

କବି ଭୀମା ଧୀବର ରେଢ଼ାଖୋଲ ସବ୍‌ଡିଭିଜନ 'ବୁରୁଡା' ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଏକ ଗରିବ ଧୀବର ବା କୈବର୍ତ୍ତ ପରିବାରରେ ଜନ୍ମ ନେଇ ମଧ ସାହିତ୍ୟ ସାଧନା ପଥରେ ଆଗେଇ ପାରିଥିଲେ । ସେ ସମ୍ଭବତଃ 'ଦଣ୍ଡଯାତ୍ରା'ର ଜଣେ ଗୁରୁଥିଲେ । ସେ ଆଶୁ କବି ଥିବାରୁ ରାମାୟଣ, ମହାଭାରତ ପ୍ରଭୃତି ଗାଥାକୁ ନିଜ ଭାଷାରେ ସ୍ୱରକୁ ସ୍ୱର ପଦକୁ ପଦ ପକାଇ ଗାଇ ପାରୁଥିଲେ । ବୁରୁଡା ଗ୍ରାମ ନିଘଞ୍ଚ ଅଗନା ଅଗନୀ ବନସ୍ତ ମଧରେ ଏକ ଗ୍ରାମ । ସେ ଗ୍ରାମଟି ସୁରୁବାଲି ଯୋର (ମହାନଦୀର ଏକ ଉପନଦୀ) କୂଳରେ ଅବସ୍ଥିତ । ତାକୁ ବଡମାଳ ବୋଲି କୁହାଯାଇ ଥାଏ । ବଡମାଳ ଗ୍ରାମଟି ତାର ସନ୍ନିକଟ ଗ୍ରାମ । ସାଧାରଣତଃ ବୁରୁଡାକୁ 'ବୁରୁଡା ବଡମାଳ' ବୋଲି କୁହାଯାଇଥାଏ । ସେ ଗ୍ରାମଟି ରେଢ଼ାଖୋଲ ଠାରୁ ମାତ୍ର ୧୨ କିଲୋମିଟର ଦୂର । ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ସେ ଗ୍ରାମର ମାହେଶ୍ୱରୀ ମୂର୍ତ୍ତୀ ପୁରାତନ ଅଟେ । ପ୍ରତି ଦଶହରା ସମୟରେ ସେଠାରେ ଛାଗ ବଳି ଓ ୩ ବର୍ଷରେ ଥରେ ମହିଷ ବଳି ପଡିଥାଏ । ରେଢ଼ାଖୋଲ ରାଜାଙ୍କର ସେଠାରେ ଏକ ଖମାର ପ୍ରତିଷ୍ଠା ହୋଇଥିଲା । କବିଙ୍କର ଜନ୍ମ ସପ୍ତଦଶ ଶତାବ୍ଦୀରେ ବୋଲି ସ୍ଥିର ହୋଇଛି ।

କବି ଭୀମା ଧୀବରଙ୍କ ରଚିତ 'କପଟ ପାଶା' ଓ ଭାରତ ସାବିତ୍ରୀ ଓଡ଼ିଆ ସାହିତ୍ୟରେ ଅତି ପରିଚିତ । କପଟ ପାଶା ଓଡ଼ିଶାର ପୁରପଲ୍ଲୀରେ ସର୍ବତ୍ର ଆଦୃତ । କଥିତ ଅଛି, ରେଢ଼ାଖୋଲର ତତ୍‌କାଳୀନ ରାଜା ଗଦାଧର ଜେନା ପୁରୀରୁ ବ୍ରାହ୍ମଣମାନଙ୍କୁ ଆଣି ତାଙ୍କ ରାଜ୍ୟରେ ବ୍ରାହ୍ମଣ ଶାସନ ବସାଇଥିଲେ । ସେ ସଂସ୍କୃତକୁ ଅତ୍ୟନ୍ତ ଆଦର କରୁଥିଲେ । ସେ କବି ଭୀମା ଧୀବରଙ୍କୁ ଡକାଇ କପଟ ପାଶା ତାଙ୍କ ନାମରେ ଭଣତି କରିବାକୁ କହିଥିଲେ । ପରନ୍ତୁ ଭୀମା ଧୀବର ସେଥିରେ ରାଜି ନ ହେବାରୁ ତାଙ୍କୁ ଦେଶାନ୍ତର ଦଣ୍ଡ ଭୋଗିବାକୁ ପଡ଼ିଥିଲା । ସମ୍ଭବତଃ ସେ ବୁରୁଡା ଗ୍ରାମ ନିଜେ ପରିତ୍ୟାଗ କରି ଧମା ଅଞ୍ଚଳରେ ରହିଥିଲେ । ତାଙ୍କର ଶେଷ ଜୀବନ କିପରି କେଉଁଠାରେ କଟାଇଲେ ତାର କିଛି ସଠିକ୍ ବିବରଣୀ ମିଳୁନାହିଁ । ସମ୍ଭବତଃ ସମ୍ବଲପୁର ରାଜା ଛତ୍ରସାଏ (ଖ୍ରୀ ୧୬୯୦-୧୭୨୫) ତାଙ୍କୁ ତାଙ୍କ ରାଜ୍ୟରେ ଆଶ୍ରୟ ଦେଇଥିଲେ । ସେତେବେଳେ ରାଜାମାନଙ୍କର ପୃଷ୍ଠପୋଷକତା ଲାଭ କରି ସାହିତ୍ୟ ରଚନା କରାଯାଉଥିଲା । ବିଶେଷତଃ ରାଜଦରବାରମାନଙ୍କରେ ପଣ୍ଡିତ ମାନେ ସଂସ୍କୃତ ସାହିତ୍ୟ ଚର୍ଚ୍ଚା କରୁଥିଲେ । ରାଜଧାନୀ ଓ ରାଜସଭାରେ ପ୍ରବୀଣ ପଣ୍ଡିତ ଆଦର ଓ ସମ୍ମାନ ପାଉଥିଲେ । ଧନୀ ଓ ଗ୍ରାମର ମୁଖିଆମାନେ ଖାଦ୍ୟପେୟ ଦେଇ ପଣ୍ଡିତମାନଙ୍କୁ ଗ୍ରାମମାନଙ୍କରେ ରଖୁଥିଲେ । ପଣ୍ଡିତମାନେ ଶିଷ୍ୟ ପରିବେଷ୍ଟିତ ହୋଇ ରହୁଥିଲେ । ଶିଷ୍ୟମାନେ ଗୁରୁ ପରମ୍ପରା କ୍ରମେ ଗୁରୁଙ୍କର ସମସ୍ତ ଦାୟିତ୍ୱ ବହନ କରୁଥିଲେ । ସପ୍ତଦଶ ଶତାବ୍ଦୀର ସମ୍ବଲପୁରର ରାଜା ବଳୀୟାର ସିଂହ ଦେବ (ଖ୍ରୀ ୧୬୫୦-୧୬୮୯)ଙ୍କ ଦରବାରରେ ପଣ୍ଡିତ କବି ଗଙ୍ଗାଧର ସମ୍ବଲପୁର ରାଜଧାନୀରେ ବାସ କରୁଥିଲେ । ଏହି କାବ୍ୟରୁ ଅନୁମାନ କରାଯାଏ ଯେ ସେ ସମୟରେ ସଂସ୍କୃତ ବିଶେଷ ଆଲୋଚନା ହେଉଥିଲା ଓ ତାର ବିଶେଷ ଆଦର ମଧ ଥିଲା ।

ବଳୀୟାର ସିଂହଙ୍କ ପରେ ଛତ୍ରସାୟ ଦେବ ସମ୍ବଲପୁରର ରାଜା ହେଲେ । ସମ୍ବଲପୁରର ବୁଢ଼ାରଜା ମନ୍ଦିର ତାଙ୍କର କୀର୍ତ୍ତି । ରାଜା ଛତ୍ର ସାଏଙ୍କ ରାଜତ୍ୱରେ ଅନ୍ୟତମ କବି "କବିରାଜ ଗୋପୀନାଥ ଷଡଙ୍ଗୀ" ଦୋ ଭାଷାରେ 'ଚିକିତ୍ସା ମଞ୍ଜରୀ' ଗ୍ରନ୍ଥ ଲେଖିଥିଲେ । ସେ ଜଣେ ଆୟୁର୍ବେଦ ବିଶାରଦ ତଥା ରାଜବୈଦ୍ୟ ଥିଲେ । ତାଙ୍କର ଉକ୍ତ ଚିକିତ୍ସାମଞ୍ଜରୀ ଏକ ଉତ୍କୃଷ୍ଟ ଚିକିତ୍ସା ଗ୍ରନ୍ଥ । ସେଥିରେ ସଂସ୍କୃତ ଶ୍ଳୋକରେ ଓଡ଼ିଆ ଗୀତମାନ ରହିଛି । କବି ଏହି ଚିକିତ୍ସା ଗ୍ରନ୍ଥର ଇତିହାସ ଅଂଶଗୁଡ଼ିକୁ ଥରେ ସଂସ୍କୃତରେ ଏବଂ ଥରେ ଓଡ଼ିଆରେ ଲେଖିଛନ୍ତି । ଏଥିରୁ ଅନୁମିତ ହୁଏ, ମହାରାଜା ଛତ୍ରସାଏଙ୍କ ଅମଳରୁ ଓଡ଼ିଆ ଭାଷା ରାଜସଭାରେ ଲିଖିତ ସାହିତ୍ୟ ରୂପେ ସୁପ୍ରତିଷ୍ଠିତ ହୋଇଥିଲା । ଓଡ଼ିଆ ଭାଷାର ଅଧ୍ୟୟନ ଓ ସେହି ଭାଷାରେ ଗ୍ରନ୍ଥ ପ୍ରଣୟନ ପାଇଁ ବିଶେଷ ଧ୍ୟାନ ଦିଆଯାଉଥିଲା ।

ଠିକ୍ ସେହି ସମୟରେ ରେଢ଼ାଖୋଲ ଠାରେ କବି ଭୀମା ଧୀବର ଖାଣ୍ଟି ଓଡ଼ିଆରେ 'କପଟପାଶା' ରଚନା କରି ଓଡ଼ିଆ ଭାଷା ତଥା ସାହିତ୍ୟର ଉନ୍ନତି ସାଧନ କରିଥିଲେ ।

ଲେଖକ ଭାଗୀରଥୀ ନେପାକ ତାଙ୍କ ''ଭୀମା ଧୀବର ଓ କପଟ ପାଶା'' ପୁସ୍ତକରେ ଯଥାର୍ଥରେ କହିଛନ୍ତି କୋଶଳା ନନ୍ଦ ମହାକାବ୍ୟ ରାଜ ପୃଷ୍ଠପୋଷକତା ଲାଭ କରିଥିବା ବେଳେ 'କପଟପାଶା' ଜନତାର ପୃଷ୍ଠପୋଷକତା ଲାଭ କରିଥିଲା । ପରନ୍ତୁ ଉଲ୍ଲେଖନୀୟ ଯେ, କୋଶଳାନନ୍ଦ ମହାକାବ୍ୟର ଚର୍ଚ୍ଚା କେବଳ ରାଜ ଦରବାରର ପଣ୍ଡିତମାନଙ୍କ ମଧ୍ୟରେ ସୀମାବଦ୍ଧ ଥିବା ସ୍ଥଳେ, ଗଣକବିଙ୍କ ଦ୍ୱାରା ରଚିତ 'କପଟପାଶା' ଗ୍ରନ୍ଥ ଓଡ଼ିଶାର ପୁରପଲ୍ଲୀ ତଥା ସହରରେ ବାସ କରୁଥିବା ପ୍ରତ୍ୟେକ ଗୃହସ୍ଥଙ୍କ ଗୃହରେ ପ୍ରବେଶ କଲା ।

କପଟପାଶାରେ କୌଣସି ରାଜା ବା ଜମିଦାରଙ୍କ ନାମୋଲ୍ଲେଖ ନାହିଁ । ସେ ଗ୍ରନ୍ଥ ମଧ୍ୟରେ ସୁଜ୍ଞଜନ, ସାଧୁଜନ, ଓ ସୁଜନ ପ୍ରଭୃତି ଶବ୍ଦ ବ୍ୟବହାର କରିବା ଦ୍ୱାରା ପାଠକ ମଣ୍ଡଳୀର ପ୍ରିୟପାତ୍ର ହୋଇ ପାରିଛନ୍ତି । ସେ 'ଭୀମାପାମର', 'ଭୀମାଦୀନ', 'ହୀନଭୀମା' କହି ପାଠକମାନଙ୍କ ଠାରେ ନିବେଦନ କରିଛନ୍ତି ତାଙ୍କର ଦୋଷାଦୋଷ କ୍ଷମା କରିବା ପାଇଁ । ସେ ନିଜ ଉଦ୍ୟମ ବଳରେ, ନିଜ ପ୍ରତିଭା ବଳରେ କପଟପାଶାକୁ ଲୋକଲୋଚନରେ ପ୍ରତିଷ୍ଠା କରି ପାରିଥିଲେ । ସେଥିପାଇଁ ସେ ଧନ୍ୟବାଦାର୍ହ ।

ରେଢ଼ାଖୋଲ ରାଜ୍ୟ ବଳୀୟାର ଦେବଙ୍କ ସମୟରେ ଅଠର ଗଡଜାତ ରାଜ୍ୟ ସଙ୍ଗେସାମିଲ ହୋଇଥିଲା । ଚୌହାନ ରାଜତ୍ୱରେ ଓଡ଼ିଆ ଭାଷା ରାଜାନୁଗ୍ରହ ଲାଭ କରିଥିଲା । ଏପରିକି ପାଟଣାର ଚୌହାନ ରାଜା ପ୍ରତାପରୁଦ୍ରଙ୍କ ସମୟରେ କବି ଚୈତନ୍ୟ ଦାଶ କଳାହାଣ୍ଡିର ଖଡ଼ିଆଳ ଠାରୁ ୮ କିଲୋମିଟର ଦୂର ଉତ୍ତର ପୂର୍ବ ଦିଗରେ ଥିବା ବଡମୂଳ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଓଡ଼ିଆ ସାହିତ୍ୟରେ ବିଷ୍ଣୁଗର୍ଭ ପୁରାଣ ଓ ନିର୍ଗୁଣ ମାହାତ୍ମ୍ୟ ନାମରେ ଦୁଇ ଖଣ୍ଡ ଉତ୍କୃଷ୍ଟ ଗ୍ରନ୍ଥ ରଚନା କରିଥିଲେ । ଚୈତନ୍ୟ ଦାସଙ୍କ ଭାଷା ଶୁଦ୍ଧ ଓଡ଼ିଆ ଭାଷା । ଏହା ଆଧୁନିକ ଓଡ଼ିଆ ଭାଷାଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ । ଚୈତନ୍ୟ ଦାସଙ୍କ ପୂର୍ବରୁ ଅର୍ଥାତ ପଞ୍ଚଦଶ ଶତାବ୍ଦୀର ପ୍ରଥମ ଭାଗରେ ଲିଖିତ ନୃସିଂହ ନାଥ ଶିଳାଲେଖରେ ଓଡ଼ିଆ ଲିପି ପଶ୍ଚିମ ଓଡ଼ିଶାର ପ୍ରଥମ ଓଡ଼ିଆ ଲିପିଭାବ ପ୍ରମାଣିତ । ଏହା ପୂର୍ବରୁ ଓଡ଼ିଆ ଭାଷାରେ କୌଣସି ଓଡ଼ିଆ ଲିପି ପଶ୍ଚିମାଞ୍ଚଳରେ ଆବିଷ୍କୃତ ହୋଇ ନାହିଁ ।

କବି ଭୀମା ଧୀବରଙ୍କ ସମସାମୟିକ ଭକ୍ତ କବି ଦୀନକୃଷ୍ଣ ଦାସ 'ରସକଲ୍ଲୋଳ କୁ 'କ' ଆଦ୍ୟନିୟମରେ ରଚନାରେ ବ୍ରତୀ ଥିଲେ । କବି ଉପେନ୍ଦ୍ରଭଞ୍ଜ 'ବ' ଆଦ୍ୟ ନିୟମରେ ବୈଦେହୀଶ ବିଳାଶ ରଚନା କରିଥିଲେ । କବି ଭୀମା ଧୀବର ସେହି ସପ୍ତଦଶ ଶତାବ୍ଦୀର ହୋଇ ମଧ ତାଙ୍କ ଲେଖା ଚତୁର୍ଦ୍ଦଶ ଶତାବ୍ଦୀର କବି ଶୁଦ୍ରମୁନି ଶାରଳା ଦାସଙ୍କ ରଚନା ଦ୍ୱାରା ଅନୁପ୍ରାଣିତ ।

କପଟ ପାଶା:-

କବି ଭୀମା ଧୀବର କପଟ ପାଶାର ପ୍ରଥମ ଛାନ୍ଦରେ ଶାରଳାଙ୍କୁ ସ୍ମରଣ କରିଛନ୍ତି । ଶୁଦ୍ରମୁନି ସାରଳା ଦାସଙ୍କ ପରି ସେ ଝଙ୍କଡ ସାରଳାଙ୍କୁ ନମସ୍କୃତି ଜଣାଇଛନ୍ତି ।

''କୁରୁପତି ଯୁଧିଷ୍ଠିର ପଶାଖେଳ ରସ ।
ମହିମାକୁ ଗନ୍ଥା ଛାନ୍ଦ ପ୍ରତିବନ୍ଧ ଭାଷ ଯେ ।।
ବନ୍ଦଇମା' ଶାରଳା ଝଙ୍କଡପୁର ବାସୀ ।
ତୋର ଆଜ୍ଞା ହେଲେମୂର୍ଖ ପଣ୍ଡିତରେ ମିଶି ଗୋ ।।

କବି ଭୀମା ଧୀବର ପଶାଖେଳ ରସକୁ ଶାରଳା ମହାଭାରତରୁ ଆଣି, ତାକୁ ବିସ୍ତୃତ ଭାବେ ବିଭିନ୍ନ ରାଗ ରାଗିଣୀ ଦେଇ, ପଦକୁ ପଦମିଳାଇ, 'କପଟ ପାଶା'ର ବିଷୟ ବସ୍ତୁ ରୂପେ ଗ୍ରହଣ କରିଛନ୍ତି । ଏଥିରେ ସେ ଦଶଟି ଛାନ୍ଦ ରଖିଛନ୍ତି । ପ୍ରଥମରେ ନଳିନୀ ଗୌଡା, ୨ୟରେ ବଙ୍ଗଳାଶ୍ରୀ, ତୃତୀୟରେ ଚୋଖି, ୪ର୍ଥରେ ରଣବିଜେ, ପଞ୍ଚମ ଚକ୍ରକେଳି, ୬ଷ୍ଠ ଛାନ୍ଦ ଚିନ୍ତା ଦେଶାକ୍ଷ, ସପ୍ତମ ଛନ୍ଦକାଳି, ଅଷ୍ଟମ ଛାନ୍ଦ ସଙ୍ଗମ ଡିଆରୀବାଣୀ, ନବମ ଛାନ୍ଦ କଳହଂସ କେଦାର ଓ ଦଶମ ଛାନ୍ଦ ପାହାଡିଆ କେଦାର ରାଗ ଅଛି ।

କପଟ ପାଶାରେ ଯୁଧିଷ୍ଠିର ପଶାଖେଳରେ ଧନ ସମ୍ପଦ, ରାଜ ସିଂହାସନ, ନିଜ ସମେତ ପାଞ୍ଚ ଭାଇ ଏବଂ ଶେଷରେ ନିଜ ସ୍ତ୍ରୀ ଦ୍ରୌପଦୀଙ୍କୁ ସୁଦ୍ଧା ବାଜି ଲଗାଇ ହାରିବା ଦୃଶ୍ୟ ଦିଆଯାଇଛି । ଦୁଃଶାସନ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବା ଏବଂ ଭୀଷ୍ମଙ୍କ ପରାମର୍ଶରେ ଦୁର୍ଯ୍ୟୋଧନ ଶେଷରେ ଦୁଃଶାସନକୁ ବସ୍ତ୍ରହରଣ କରିବାକୁ ବାରଣ କରିବା ଉଲ୍ଲେଖ ଅଛି । ଦୁର୍ଯ୍ୟୋଧନଙ୍କ ପତ୍ନୀ ଭାନୁମତୀ ଦେହରେ ଅଗ୍ନି ସଂଯୋଗ ହେବାରୁ ସେ ଉଲଗ୍ନ ଅବସ୍ଥାରେ କୁରୁସଭାରେ ଉପସ୍ଥିତ ହେବା ବିଷୟ ଓ ଅବଶେଷରେ ଧୃତରାଷ୍ଟ୍ରଙ୍କ ଅନୁରୋଧରେ ଦ୍ରୌପଦୀଙ୍କ କ୍ରୋଧ ଶାନ୍ତ ହେବା କଥା ବର୍ଣ୍ଣିତ ।

କୃଷ୍ଣ ଭକ୍ତ ଭୀମା ଧୀବର ଅର୍ଥକୁ ଅର୍ଥ ମିଶାଇ ଓ ପଦକୁ ପଦ ମିଶାଇ ଗୀତ ଲେଖିଥିବା କଥା ଦ୍ୱିତୀୟ ଛାନ୍ଦରେ ଦର୍ଶାଇଛନ୍ତି -

''ଶୁଣହେ ସୁଜନ ଜନ ମୁ ଛାର ପାମର ହୀନ
କହିବାକୁ ନିକି ମହାଭାରତ
ଅର୍ଥକୁ ଅର୍ଥ ମିଶାଇ ପଦକୁ ପଦ ପକାଇ
ଛାନ୍ଦ ପ୍ରବନ୍ଧରେ ମୁଁ କଲଇଁ ଗୀତ
ସାଧୁ ଜନେ ନଘେନ ଦୋଷ
କହେ ଭୀମାହୀନ କୃଷ୍ଣ ଚରଣେ ଆଶ ।''

ଭୀମା ଧୀବର ଜାତିରେ କୈବର୍ତ୍ତ ହୋଇ ଜନ୍ମ ଗ୍ରହଣ କରିଥିବାରୁ ଏହି ଜାତି କପଟ ପାଶା ରଚନା କରିବା ପାଇଁ ମହତ ଜାତି ନୁହେଁ ବୋଲି କହିଛନ୍ତି । ପଣ୍ଡିତମାନେ ଅଶୁଦ୍ଧକୁ ଶୁଦ୍ଧ ଭାବେ ପଢ଼ିବାକୁ ବିନମ୍ର ଅନୁରୋଧ କରିଛନ୍ତି । ଭୀମ ହୀନ ବା ଭୀମ ପାମର କହି ପ୍ରଭୁଙ୍କ ପାଦପଦ୍ମରେ ସର୍ବଦା ଧ୍ୟାନ କରି ଏହି ଗ୍ରନ୍ଥଟି ରଚନା କରିଛନ୍ତି ବୋଲି ବିନମ୍ର ଭାବେ ସର୍ବଶେଷ ପଦରେ କହିଛନ୍ତି ।

''ଏଯେ କପଟ ପାଶା ଅମୃତ ରସ ଯେ
ସୁଜନ ଜନେ ଏହି ରସରେ ରସ ହେ ।
ନୁହଁଇ ମହତ ଜାତି କୈବର୍ତ୍ତ ଶୁଦ୍ଧ ଅଶୁଦ୍ଧ ନ ଘେନ ଚିତ୍ତ
କହଇ ଭୀମା ପ୍ରଭୁ ଚରଣେ ସର୍ବଦା ଆଶ ହେ ।''

ଭୀମା ଧୀବର ଉତ୍କଳ ସାହିତ୍ୟର ଗତିକୁ ଅଗ୍ରସର କରାଇଥିଲେ । ତାଙ୍କର ରଚିତ କପଟପାଶା ଜନସାଧାରଣଙ୍କର ବଡ ଆଦରଣୀୟ ହୋଇ ରହିଛି ।◆



◆ *ଉତ୍କଳ ଇତିହାସ - ପଣ୍ଡିତ କୃପାସିନ୍ଧୁ ମିଶ୍ର ।*

# ପରିଶିଷ୍ଟ - ୧

## ପ୍ରଥମ ମହାଭବଗୁପ୍ତଙ୍କ ବକ୍ରତେନ୍ତଳୀ ତାମ୍ର ଶାସନ

ଓଁ ସ୍ୱସ୍ତି । ସୁବର୍ଣ୍ଣପୁର ସମାବାସିତଃ ଶ୍ରୀମତୋ ବିଜୟସ୍କନ୍ଧା ବାରାତ୍ ପରମଭଟାରକ ମହାରାଜାଧି ରାଜ ପରମେଶ୍ୱର ଶ୍ରୀ ଶିବ ଗୁପ୍ତଦେପ ପାଦାନୁଧାତ ପରମମାହେଶ୍ୱର ପରମଭଟାରକ ମହାରାଜାଧିରାଜ ପରମେଶ୍ୱର ସୋମକୁଳ ତିଳକ ତ୍ରିକଳିଙ୍ଗା ଧିପତି ଶ୍ରୀ ମହାଭବଗୁପ୍ତ ରାଜେଦେବଃ କୁଶଳୀ ଲୁପଉରାଖଣ୍ଡୀୟ ବକ୍ରତେନ୍ତଳୀ ଗ୍ରାମେ ବ୍ରାହଣାନ୍ ସଂପୂଜ୍ୟ ତତ୍ ପ୍ରତି   ନିବାସୀ କୁଟୁମ୍ବିନ୍ ସ୍ତଦ ବିଷୟୀୟ ଯଥା କାଳାଧାସିନଃ ସମାହର୍ତ୍ତି ସନ୍ନିଧାତୃ ଦାଣ୍ଡପାଶିକ ପିଶୁନ ବେତ୍ରକାବରୋଚ୍ଚନ ରାଜବଲ୍ଲଭାଦୀନ ଅନ୍ୟାଂଷ୍ଟ ଚାଟଭଟ ଜାତୀୟାନ ସମାଜ୍ଞାପୟତି । ବିଦିତମସ୍ତୁ ଭବତାଂ ଯଥାସ୍ମାଭିରୟଂ ଗ୍ରାମଃ ସନିଧିଃ ସେପାନିଧିଃ ସର୍ବ ବାଧା ବିବର୍ଜ୍ଜିତଃ ସମର୍ତ୍ତୋକ୍ଷରଃ ସାମ୍ରମଧୁକଃ ସଜଳସ୍ଥଳଃ ସର୍ବୋପରି କରାଦାନ ସହିତଃ ପ୍ରତିନିଷିଦ୍ଧଚାରଣାୟ ରାଢ଼ାପୟଲ୍ଲୀ କନ୍ଦର ବିନିର୍ଗଣୟ ମେରଣ୍ଡ ବାସ୍ତବ୍ୟାୟ ଭଟ୍ଟପୁତ ଜାତ ରୂପନାମ୍ନେ ଭଟ୍ଟପୁତ୍ର ଶ୍ରୀବସ୍ତ୍ର ସୁନବେ ସଲିକ ଧାରାପୁରଃ ସରଂ ଆଚନ୍ଦ୍ରତାରକାର୍କକ୍ଷିତି ସମକାଳୋପଭୋଗାର୍ଥଂ ମାତପିତ୍ରୋରାତ୍ମ ନଶ ପୂଣ୍ୟଯଶୋଭି ବୃଦ୍ଧୟେ ବିଶୁମତି ସଂକ୍ରାନ୍ୟାଂ ତାମ୍ରଶାସନେ ନାକରୀକୃତ୍ୟ ପ୍ରତିପାଦିତ୍ୟ ଇତ୍ୟବଗତ୍ୟ ସ୍ୱମୁଚିତ ଭୋଗଭାଗବର ହିରଣ୍ୟାଦିକ ମୁଞ୍ଚାନ ୟ ଭିର୍ତ୍ତବହିଃ ସୁଖେନ ପ୍ରତି ବସ୍ତବ୍ୟମିତି । ଭାବିଭିଷ୍ଟ ନୃପତି ଉର୍ଦ୍ଦଭିରୟମସ୍ମ ଦାୟଧର୍ମ ଗୌରବାଦସ୍ମ ଦନୁରୋଧାଚ୍ଚ ସ୍ୱଦତ୍ତିରି ବାନୁପାଳନୀୟା ।

ତଥାଚୋକ୍ତଂ ଧର୍ମଶାସ୍ତ୍ରେ:-

ବହୁବିର୍ତ୍ତସୁଧା ଦତ୍ତା ରାଜଭିଃ ସଗରାଦିଭିଃ ।

ଯସ୍ୟ ଯ୍ୟ ଯଦା ଭୂମିସ୍ତସ୍ୟତସ୍ୟତଦାଫଳଂ ।

ମାଭୂଦପଳଶଙ୍କା ବଃ ପରଦତ୍ତେତି ପାର୍ଥିବାଃ

ସ୍ୱଦାନାତ ଫଳମାନନ୍ତ୍ୟଂ ପରଦତ୍ତାନୁପାଳନେ

ଷଷ୍ଟିବର୍ଷ ସହସ୍ରାଣି ସ୍ୱର୍ଗେ ମୋଦିତି ଭୂମିଦଃ ।

ଆକ୍ଷେପ୍ତା ଚାନୁମନ୍ତା ଚ ତାନ୍ୟେବ ନରକେ ବସେତ୍

ଅଗ୍ନେରପତ୍ୟଂ ପ୍ରଥମଂ ସୁବର୍ଣ୍ଣ ଭୂର୍ବୈଷ୍ଣବୀ ସୂର୍ଯ୍ୟ ସୁତଶ୍ଚ ଗାବଃ

ଯଃ କାଞ୍ଚନଂ ଗାଞ୍ଚ ମହୀଞ୍ଚ ଦଦ୍ୟାତ୍ ଦତ୍ତାସ୍ତ୍ରୟ ସ୍ତେନ ଭବନ୍ତି ଲୋକାଃ ।

ଅସ୍ଫୋଟୟନ୍ତିପିତରଃ ପ୍ରଗଲ୍ଭ୍ୟନ୍ତି ପିତାମହାଃ

ଭୂମିଦାତା କୂଳେ ଜାତଃ ମନସ୍ତ୍ରାତା ଭବିଷ୍ୟତି

ଭୂମି ଯଃ ପ୍ରତିଗୃହ୍ଣାତି ଯଶ୍ଚଭୂମିଂ ପ୍ରୟଚ୍ଛତି

ଉଭୌତୌ ପୁଣ୍ୟକର୍ମାଣୌ ନିୟତଂ ସ୍ୱର୍ଗଗାମିନୌ
ତଡାଗାନାଂ ସହସ୍ରାଣି ବାଜପେୟଶତାନିଚ
ଗବାଂ କୋଟି ପ୍ରଦାନେନ ଭୂମିହର୍ତ୍ତା ନ ଶୁଧ୍ୟତି ।
ହରତେ ହାରୟେଦ୍ୟସ୍ତୁ ମନ୍ଦବୁଦ୍ଧି ସ୍ତମୋବୃତଃ
ସବଦ୍ଧୋ ବାରୁଣୈଃ ପାଶୈସ୍ତିର୍ଯ୍ୟଗୋନିଷ୍ଠ ଗଚ୍ଛତି ।
ସ୍ୱଦତ୍ତାଂ ପରଦତ୍ତାଂ ବା ଯୋ ହରେତ ବସୁନ୍ଧରାଂ
ସ ବିଷ୍ଠାୟଂ କୃମି ର୍ଭୂତ୍ୱା ପଚ୍ୟତେ ପିତୃଭିଃ ସହ ।
ଆଦିତ୍ୟୋବ୍ଦୁରଣୋ ବିଷ୍ଣୁ ବ୍ରହ୍ମାସୋମୋ ହୂତାଶନଃ
ଶୂଳପାଣିସ୍ତୁ ଭଗବାନଭିନେନ୍ଦିତ ଭୂମିଦଂ ।
ସମାନ୍ୟୋଽୟଂ ଧର୍ମସେତୁର୍ନୃ ପାଣାଂ-
କାଳେ କାଳେ ପାଳନୀୟୋ ଭବଦ୍ଭିଃ
ସର୍ବାନେତାନ୍ ଭାବିନୋ ଭୂପତୀନ୍ଦ୍ରାନ୍-
ଭୂୟୋ ଭୂୟୋ ଯାଚତେ ରାମଚନ୍ଦ୍ରଃ ।

ଇତି କମଳ ଦଳାମ୍ବୁବିନ୍ଦୁ ଲୋଳାଂ ଶ୍ରିୟମନୁଚିନ୍ତ୍ୟ ମନୁଷଜୀବିଞ୍ଚ ବୁଦ୍ଧ୍ୱା ନହି ପୁରୁଷୈଃ ପରକୀର୍ତ୍ତୟୋ ବିଲୋପ୍ୟାଃ । ପରମ ପଟ୍ଟରକ ମହାରାଜାଧିରାଜ ପରମେଶ୍ୱର ଶ୍ରୀଜନମେଜୟ ବେଦସ୍ୟ ବିୟରାଜ୍ୟ ସମ୍ବତ୍ସରେ ତୃତୀୟେ ଶ୍ରାବଣ ମାସ ସିତପକ୍ଷ ପଞ୍ଚମ୍ୟାଂ ଯତ୍ରାଙ୍କତଃ ସମ୍ବତ୍ ୩ ଶ୍ରାବଣ ସୁଦି ୫ । ଲିଖିତମିଦଂ ଶାସନଂ ମହାସାନ୍ଧି ବିଗ୍ରହ ପ୍ରତିବନ୍ଧ କାୟସ୍ଥଃ କୋଇଘୋଷେଣ ବଲ୍ଲଘୋଷସୁତେନ ସଂଗ୍ରାମେନ ଉତ୍କୃତଂ ଶାସନମିତି ରକ୍ଷର ଓଝା ସୁତେନ ମଙ୍ଗଳଂ ମହାଶ୍ରୀଃ ।

☆☆☆

# ସହାୟକ ଗ୍ରନ୍ଥସୂଚୀ


୧. ଓଡ଼ିଶା ଇତିହାସ - ହରେକୃଷ୍ଣ ମହତାବ
୨. ଓଡ଼ିଶାର ରାଜନୈତିକ ଇତିହାସ - ଶ୍ରୀ ବଳରାମ ମହାନ୍ତି
୩. ଉତ୍କଳ ଇତିହାସ - ପଣ୍ଡିତ କୃପାସିନ୍ଧୁ ମିଶ୍ର
୪. ସମ୍ବଲପୁର ଇତିହାସ - ଶିବ ପ୍ରସାଦ ଦାଶ
୫. ପ୍ରାଚୀନ ଉତ୍କଳ - ଜଗବନ୍ଧୁ ସିଂହ
୬. ଖଡିଆଳର ଇତିହାସ - ଶ୍ରୀମତୀ ରାଜଶ୍ରୀ ଦେବୀ
୭. ଅନୁଗୋଳ ଇତିହାସ - ଗୋବିନ୍ଦ ରାଜଗୁରୁ
୮. ବୁଢ଼ାପଙ୍କ ଯୁଦ୍ଧ ପୋଥି - କବିଚନ୍ଦ୍ର ନୃସିଂହ ରାୟଗୁରୁ
୯. ସୋନପୁର ଇତିହାସ - (୧ମ ଖଣ୍ଡ) - ଶ୍ରୀ ସଦାନନ୍ଦ ଅଗ୍ରଓ୍ୱାଲ
୧୦. ସୋନପୁର ଇତିହାସ - (୨ୟ ଖଣ୍ଡ) - ଶ୍ରୀ ସଦାନନ୍ଦ ଅଗ୍ରଓ୍ୱାଲ
୧୧. ପ୍ରାଚୀନ ଉତ୍କଳର ଧର୍ମ ଓ ପ୍ରତ୍ନତତ୍ତ୍ୱ - ପ୍ରଶାନ୍ତ କୁମାର ରାୟ
୧୨. ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ - ଓଡ଼ିଶା ସାହିତ୍ୟ ଏକାଡେମୀ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ
୧୩. ସୋନପୁର - ପ୍ରାଦେଶିକ ଲେଖକ ସମ୍ମିଳନୀ ସ୍ମରଣିକା - ୧୯୮୦-୮୧
୧୪. ସମ୍ବଲପୁରୀ ଲୋକସାହିତ୍ୟ - କୁମାର ହସନ୍
୧୫. କବି କୁଳ ଚାନ୍ଦ ଭୀମଭୋଇ - ଭାଗୀରଥି ନେପାକ
୧୬. ରେଢ଼ାଖୋଲର ରାଜବଂଶାବଳୀ - (ପାଣ୍ଡୁଲିପି) - ପିତାମ୍ବର ଶତପଥୀ
୧୭. ଦାରୁଦେବତା - ଡଃ ବେଣୀମାଧବ ପାଢ଼ୀ
୧୮. ଓଡ଼ିଶାର ଲୋକନୃତ୍ୟ - କରମା - ଭାଗୀରଥି ନେପାକ
୧୯. ଓଡ଼ିଶାର ଲୋକନୃତ୍ୟ - ଡାଲଖାଇ - ଭାଗୀରଥି ନେପାକ
୨୦. ସୁରେନ୍ଦ୍ର ସାଏ - ସାହିତ୍ୟ ଏକାଡେମୀ
୨୧. ବଁଶାଇ - ଡଃ କୈଳାସ ଚନ୍ଦ୍ର ଦାଶ - 'ନବପତ୍ର' ୧୬ଶ ବର୍ଷ ୪ର୍ଥ ସଂଖ୍ୟା - ୧୯୮୮



ଜଗନ୍ନାଥ ମନ୍ଦିର, ରେଢ଼ାଖୋଲ



ରାଧାକୃଷ୍ଣ ମନ୍ଦିର, ରାଜବାଟୀ



ଚନ୍ଦ୍ରଶେଖର ଶିବ ମନ୍ଦିର, ରେଢ଼ାଖୋଲ



ପାର୍ବତୀ ମନ୍ଦିର, ରେଢ଼ାଖୋଲ



ରାଧାକୃଷ୍ଣ ମନ୍ଦିର, ଖନ୍ଦାଢ଼ିପ, କଳିନ୍ଦର



ଚାମୁଣ୍ଡା ବିଙ୍କେଶ୍ୱର ଶିବ ମନ୍ଦିର



ଝୁରୁରୁଗଡର ଶିଳାଲେଖ



ଉମାମାହେଶ୍ୱରୀ
ବିଘ୍ନେଶ୍ୱର ଶିବ ମନ୍ଦିର



ଝୁନୁରୁଗଡର ଦେବପୀଠ
(ଷଷ୍ଠ ପରିଚ୍ଛେଦ)



ବିଘ୍ନେଶ୍ୱର ଶିବ ମନ୍ଦିର
କୁଞ୍ଜାମରା



## ଇଂ ନିରାକାର ମହାଳିକ

ଜ - ୧୦.୦୬.୧୯୪୨

ସୋବଣା, କେନ୍ଦ୍ରାପଡା

ଲେଖକ ବୃତ୍ତିରେ ଇଞ୍ଜିନିୟର ହେଲେ ମଧ୍ୟ, ସାରସ୍ୱତ ସାଧନା ତାଙ୍କର ପ୍ରିୟ ପ୍ରବୃତ୍ତି । ଚାକିରୀ ଜୀବନରେ ସେ ବହୁସ୍ଥାନ ପରିଭ୍ରମଣର ସୁଯୋଗ ପାଇଛନ୍ତି । ତାହାହିଁ ତାଙ୍କ କୃତି-କୀର୍ତ୍ତିର ସାରସ୍ୱତ ଉତ୍ସ । ଗବେଷଣାର ଦୃଷ୍ଟିଭଙ୍ଗୀନେଇ ସେ ଲେଖିଛନ୍ତି, ଶ୍ରୀ ନୃସିଂହନାଥ, ଶ୍ରୀ ହରିଶଙ୍କର, ବେଦବ୍ୟାସ ପ୍ରଭୃତି ତଥ୍ୟମୂଳକ ପୁସ୍ତକ । ତାଙ୍କର ଲୋକପ୍ରିୟ ଜୀବନୀଗ୍ରନ୍ଥଗୁଡ଼ିକ ହେଲା "କନ୍ଧକବି ଭୀମଭୋଇ, ମନସ୍ୱୀ ବିକ୍ରମ ଦେବ ବର୍ମା, ଇଂ ସାର୍ ବିଶ୍ୱେଶ୍ୱରାୟା ।" ଗାଳ୍ପିକ ମହାଳିକଙ୍କ ରଚିତ କ୍ଷୁଦ୍ର ଗଳ୍ପ ପୁସ୍ତକ "ମଧ୍ୟାହ୍ନର ସ୍ୱର" ଏକ ନୂତନ ସ୍ୱାକ୍ଷର ବହନ କରେ ।

ଲେଖକ, ଶ୍ରୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ ସଂସଦ, ରେଢ଼ାଖୋଲ (ସମ୍ବଲପୁର), ଆଗାମୀ ସାହିତ୍ୟ ସଂସଦ, ପଦ୍ମପୁର (ବରଗଡ)ର ଜଣେ ଆଜୀବନ ସଭ୍ୟ । ଭୀମଭୋଇ ସାହିତ୍ୟ ସଂସ୍କୃତି ସଂସଦ, ନୂଆପଲ୍ଲୀ, ଭୁବନେଶ୍ୱରର ସଚିବ ଓ ଆଜୀବନ ସଭ୍ୟ । ସେ ମଧ୍ୟ ଓଡ଼ିଶା ଇଞ୍ଜିନିୟରିଙ୍ଗ କଂଗ୍ରେସର ଆଜୀବନ ସଭ୍ୟ ତଥା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଞ୍ଜିନିୟରସ୍‌ର ଫେଲୋ ରୂପେ ନିର୍ବାଚିତ ।